ପୃଥିବୀର ଶ୍ରେଷ୍ଠ ଉପନ୍ୟାସ

# ସମାଧି

ଲେଖକ :
ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
ଛାତ୍ରସାଥୀ ଅଫିସ
କଟକ-୨

ମୂଲ୍ୟ–ଟ ୪–୦୦

# ସୂଚୀ

## ଓସାମୁ ଦାଜାଇ

# ସୂର୍ଯ୍ୟାସ୍ତ

### ୧

ଭୋଜନ କକ୍ଷରେ ସକାଳେ ମାଆ ଟିକିଏ ଝୋଳ ପାଟିରେ ଦେଉ ନ ଦେଉଣୁ ଅସ୍ପଷ୍ଟ ଶବ୍ଦ କଲେ । ଝୋଳରେ କିଛି ପଡ଼ିଛି ଭାବି ମୁଁ ପଚାରିଲି—"ବାଳ କି ?"

"ନା" । ମାଆ ଚୁମୁକେ ଝୋଳ ପାଟିରେ ଦେଲେ, ଆଉ ଗମ୍ଭୀର ଭାବରେ କହିଲେ, "ଝୋଳଟା ଆଜି ଚମତ୍କାର ହୋଇଛି ।" ସେତିକ ସାରି ସାମୁଦ୍ରିକ ଶାଗ ଲଗାଇ ସେ କେତେ ଗୁଣ୍ଡା ଭାତ ଖାଇଲେ । ମୁଁ କିଛି ଭାତ ପ୍ଲେଟରେ ନେଇ ଚପଷ୍ଟିକରେ ଖୁଞ୍ଜି ଖୁଞ୍ଜି ଚକଟିଲି ଏବଂ ଚଟେଇ ଖାଇଲା ଭଳି ପାଟି ଭିତରକୁ ଠେଲି ଦେଲି । ମାଆ ଖାଇ ସାରି ଖଟରେ ଲଗିଲା କାନ୍ଥକୁ ଆଉଜି ଠିଆ ହେଲେ । କିଛି କ୍ଷଣ ଚୁପ୍ ହୋଇ ମୋର ଏମିତିକା ଖାଇବାର ଢଙ୍ଗ ଦେଖି କହିଲେ—"କାଜୁକୋ, ସେମିତି ଖାଆନ୍ତୁ ନାହିଁ । ସକାଳର ଖାଦ୍ୟଟା ସବୁ ଠାରୁ ବେଶୀ ତୃପ୍ତିରେ ଖାଇବା ଉଚିତ ।"

"ମାଆ, ତୁମର ତୃପ୍ତି ହୁଏ ?"

"ମୋ କଥା ଛାଡ଼, ମୁଁ ତ ଏବେ ରୋଗରୁ ଉଠିଛି ।"

"କିନ୍ତୁ ମୋର ତ କୌଣସି ରୋଗର କାରଣ ନାହିଁ ।"

"ନା, ନା ।" ମ୍ଳାନ ହସି ମାଆ ମୁଣ୍ଡ ହଲାଇଲେ ।

ପାଞ୍ଚ ବର୍ଷ ତଳେ ମୁଁ ଫୁସଫୁସର ରୋଗରେ ଶଯ୍ୟାଶାୟୀ ହୋଇଥିଲି । ମାଆଙ୍କର ହାଲି ଅସୁଖଟା ବାସ୍ତବିକ ସ୍ନାୟୁ ଓ ମନ ଉପରେ ଯଥେଷ୍ଟ ଚାପ ପକାଇଛି । ତଥାପି ତାଙ୍କର ଯେତେ ସବୁ ଚିନ୍ତା ମୋର ଲାଗି !

ପରସ୍ପରର ଆଖି ଏକ ହୁଅନ୍ତେ ଆମେ ଦୁହେଁ ପୂର୍ଣ୍ଣ ସହାନୁଭୂତି ଅନୁଭବ କଲୁ । ମୁଁ ହସି ଦେଲାରୁ ମାଆଙ୍କ ମୁଖରେ ବି ହସ ଫୁଟିଲା । ଛଅ ବର୍ଷ ତଳେ ମୋ ବିବାହ ବିଚ୍ଛେଦର ଘଟଣାଗୁଡ଼ାକ ହଠାତ୍ ଛବି ପରି ମୋ ମନ ଭିତରେ ଭାସିଗଲା । ସେ ବି କଅଣ ମୋରି ପରି ନିଜ ଅଜ୍ଞାତରେ କୌଣସି ଅସ୍ୱସ୍ତିକର ଘଟଣାକୁ ମନେ ପକାଉଥିଲେ ? "ମାଆ, ଏକ୍ଷଣି ତୁମେ ମୋ କଥା ଭାବୁଥିଲ ?"

"ନା ।"

"ନାଓଞ୍ଜର କଥା ?"

"ବୋଧ ହୁଏ"—ମୁହୂର୍ତ୍ତେ ଆତ୍ମା ସମ୍ବରଣ କରି ମଥା ହଲାଇ ମାଆ କହିଲେ ।

ବିଶ୍ୱ ବିଦ୍ୟାଳୟରେ ପଢୁଁ ପଢୁଁ ମୋ ସାନ ଭାଇକୁ ଯୁଦ୍ଧର ଡାକରା ଆସିଲା । ଦକ୍ଷିଣ ପ୍ରଶାନ୍ତ ସାଗରର କୌଣସି ଏକ ଦ୍ୱୀପକୁ ତାହାକୁ ପଠାଗଲା । ମାତ୍ର ଯୁଦ୍ଧର ବିରତି ଠାରୁ ଏ ଅବଧି ସେ ନିଖୋଜ । ମାଆ ଧରି ନେଇଛନ୍ତି ପୁଅ ସାଙ୍ଗରେ ତାଙ୍କର ଏ ଜନ୍ମରେ ଆଉ ଦେଖା ହେବ ନାହିଁ । ମୋର କିନ୍ତୁ ଦୃଢ଼ ବିଶ୍ୱାସ ତାହା ସହିତ ନିଶ୍ଚୟ ପୁଣି ଦେଖା ହେବ ।

"ଭାବିଥିଲି ତାହାର ଆଶା ମୁଁ ଛାଡ଼ି ଦେଇଛି । କିନ୍ତୁ ତୋର ଏହି ସୁଆଦିଆ ଝୋଲଟା ତାହାର କଥା ମୋର ମନେ ପକାଇ ଦେଲା ।"

ପ୍ରାୟ ଉଚ୍ଚ ବିଦ୍ୟାଳୟରେ ପ୍ରବେଶ କଲା ମାତ୍ରେ ନାଓଞ୍ଜର ଭୟଙ୍କର ସାହିତ୍ୟ ରୋଗ ଆରମ୍ଭ ହେଲା । ସାହିତ୍ୟର ନାମରେ ସେ

ଏକା ବେଳେ ଉପାଚଳେ ଯାଇ ପଡ଼ିଲ । ମାଆଙ୍କ ଦୁଃଖର କଥା ଏକମାତ୍ର ଭଗବାନ ଜାଣନ୍ତି । "ତୁମ ପରି ହତଭାଗାର ମରଣ ନାହିଁ । ବରଂ ସତ୍, ସୁନ୍ଦର, ବନସ୍ପୀ ଲୋକେ ଆଗେ ମରନ୍ତି ।"

ମାଆ ହସିଲେ । "ଅର୍ଥାତ୍ ତୁ ବୋଧ ହୁଏ ଆଗେ ଚାଲି ଯିବୁ ?"

"ମୁଁ କାହିଁକି ମରିବ ? ମୁଁ ତ ମନ୍ଦ, କୁତ୍ସିତ । ହସି ଖେଳି ଅଶୀଟା ବର୍ଷ କଟାଇ ଦେବ ।"

"ସତେ ? ତାହା ହେଲେ ତୋ ମାଆର ପରମାୟୁ ତ ନବେ ବର୍ଷ ?"

"ନିଶ୍ଚୟ ।" ମୋ ମାଆ ପରମା ସୁନ୍ଦରୀ । ମୁଁ ତାଙ୍କର ଦୀର୍ଘାୟୁ କାମନା କଲି ।

ଚାରି ପାଞ୍ଚ ଦିନ ତଳେ ପଡ଼ିଆର କେଉଁଟା ପିଲ ବଗିଚାର ବାଡ଼ ଭିତରେ ବାର-ତେରଟା ସାପର ଅଣ୍ଡା ଦେଖିଲେ । ବୁଦା କଡ଼ରେ ଗୋଟିଏ କାଠିକୁଟା ଗୋଟାଇ ଆଣି ନିଆଁ ଲଗାଇ ତାହା ଭିତରକୁ ଗୋଟାକ ପରେ ଗୋଟାଏ ଅଣ୍ଡା ପକାଇ ଦେଲୁ । ପ୍ରାୟ ଅଧ ଘଣ୍ଟାକ ପରେ ଦେଖା ଗଲା, ଅଣ୍ଡାଗୁଡ଼ିକ ପୋଡ଼ିବାର କିଛି ଲକ୍ଷଣ ଦିଶୁ ନାହିଁ । ମୁଁ ପିଲମାନଙ୍କୁ ଲଗାଇ ସେଗୁଡ଼ାକୁ ନିଆଁରୁ କାଢି ଆଣି ବଦରି ଗଛ ମୂଳରେ ପୋତିବାର ବ୍ୟବସ୍ଥା କଲି । ସମାଧି ଚିହ୍ନ ବି ଦିଆ ହେଲା । ସବୁ କାମ ସାରି ପିଲମାନଙ୍କୁ ବିଦା କରିଦେଇ ଚାଲି ଆସିଲି । ମଝିରେ ଲତା ମଣ୍ଡାର ସ୍ଥାଇରେ ମାଆ ଛିଡ଼ା ହୋଇଥିଲେ । କହିଲେ—"ଏ କି ନିଷ୍ଠୁରତା !"

"ଭାବିଥିଲି ବିଷାକ୍ତ ସାପ ଅଣ୍ଡା, କିନ୍ତୁ ପ୍ରକୃତରେ ସେଗୁଡ଼ାକ ଧଣ୍ଡ ସାପର ଅଣ୍ଡା । ଯାହା ହେଉ ଭଲ କରି ସମାଧି ଦେଇଛୁ ।"

ମାଆଙ୍କ ମନରେ ଅବଶ୍ୟ ସେମିତି କିଛି କୁସଂସ୍କାର ନାହିଁ । କିନ୍ତୁ ଦଶ ବର୍ଷ ତଳେ ଆମର ନଗିକାତା ଷ୍ଟ୍ରିଟର ଘରେ ବାବାଙ୍କ

ମୃତ୍ୟୁ ପରଠୁଁ ସାପ ସମ୍ବନ୍ଧରେ ମାଆଙ୍କ ମନରେ କେମିତିକା ଗୋଟାଏ ଆତଙ୍କ ଖେଳୁଛି । ବାବାଙ୍କ ମୃତ୍ୟୁ ଶଯ୍ୟା ପାଖରେ ଖଣ୍ଡିଏ କଳା ସୂତା ପଡ଼ିଛି ଭାବି ଉଠାଇବାକୁ ଯାଇ ମାଆ ଦେଖିଲେ ସେଟା ସୂତା ନୁହେଁ, ସାପ । ଘରର ପାଖ ବାରନ୍ଦା ବାଟେ ସାପଟା ସରସର ହୋଇ ବାହାରି ଗଲା । କେବଳ ମାଆ ଓ ଓସ୍ୱାଲ୍ଡ ମାମୁଁଙ୍କ ନଜରରେ ପଡ଼ିଥିଲା । ସେମାନେ ନୀରବ ରହିବାରୁ, ମୁଁ ଓ ନାଓଜ ସାପ ସମ୍ବନ୍ଧରେ କିଛି ଜାଣି ପାରିଲୁ ନାହିଁ ।

କିନ୍ତୁ ଦଶ ବର୍ଷ ତଳେ ଯେଉଁ ଦିନ ବାବାଙ୍କର ଦେହାନ୍ତ ହେଲା, ସଞ୍ଜ ବେଳେ ପୋଖରୀ ଆଡ଼ରେ ବଗିଚାର ଗଛ କେଉଁଠାରେ ସାପ ଗୁଡ଼ାଇ ହୋଇଥିବାର ଦେଖିଥିଲି । ଏକ୍ଷଣି ମୋର ବୟସ ଅଣତିରିଶ ବର୍ଷ ହେଲା । ଆଜି ବି ସ୍ପଷ୍ଟ ମନେ ଅଛି, ବାବାଙ୍କ ଶେଷ କୃତ୍ୟ ପାଇଁ ପୋଖରୀ ଆଡ଼ରେ ଫୁଲ ତୋଳିଲା ବେଳେ ଆଜାଲିଆ ବୁଦା ନିକଟରେ ଗଛର ଅଗରେ ଗୋଟାଏ ସାପ ଚଢ଼ିଥିବାର ଦେଖିଲି । ଦେହ ଶିହେରି ଉଠିଲା । ଆଗେଇ ଯାଇ କେରିୟା ଗୋଲାପର ଖଣ୍ଡିଏ ଡାଳ କାଟିଲା ବେଳକୁ ଦେଖିଲି, ସେଠାରେ ବି ସାପଟାଏ । ପ୍ରତି ଗଛର ଡାଳରେ ଓ ବୁଦାରେ ସାପ । ଡରିଗଲି । ମାଆଙ୍କୁ ଏ କଥା କହିଲି । ସେ ଖାଲି ଥରେ ମୁଣ୍ଡ ହଲାଇଲେ । ଗୋଟାଏ ଗଭୀର ଚିନ୍ତାରେ ସେ ମଗ୍ନ ଥିଲେ । ତେବେ ଏହା ଠିକ୍ ଯେ ଏହି ଦୁଇଟି ଘଟଣା ପରଠୁଁ ସାପ ପ୍ରତି ମାଆଙ୍କ ମନରେ ଉଦ୍‌ବେଗ, ଆତଙ୍କ ଓ ଆଶଙ୍କା ବସା ବାନ୍ଧିଲା ।

ସେ ଦିନ ସକାଳଟା ଭାରି ସୁନ୍ଦର ସ୍ନିଗ୍ଧ ଥିଲା । ସେଥିପାଇଁ ସାରି ଖଣ୍ଡିଏ ବେତ ଚଉକି ଧରି ବଗିଚାରେ ପାଦ ଦେଲା ମାତ୍ରେ ବୁଦା କଡ଼ରେ ଗୋଟାଏ ସାପ ଉପରେ ମୋର ନଜର ପଡ଼ିଲା । କ୍ଷିପ୍ର ତତ୍ପରତାରେ ଚଉକିଟା ବାରନ୍ଦାକୁ ଟାଣି ନେଇ ପଶମ-ବୁଣା

ସରଞ୍ଜାମ ଧରି ବସିଲି । ଅପରାହ୍ଣରେ ବଗିଚାର ସେ ପଟରେ ଲାଇବ୍ରେରୀରୁ ଖଣ୍ଡିଏ ବହି ଆଣିଲା ବେଳେ ଦେଖିଲି, ସେହି ସାପଟା ପରମ ନିଶ୍ଚିନ୍ତରେ ପଡ଼ିଆ ଟପି ଜଙ୍ଗଲି ଗୋଲାପ ବୁଦାର ଛାଇରେ ମୁଣ୍ଡ ଟେକ ଅଗ୍ନି-ଶିଖା ପରି ଭୟଙ୍କର ଜିଭଟା ଲହଲହ କଲା । ସଞ୍ଜ ବେଳେ ମାଆଙ୍କ ସାଙ୍ଗରେ ଚାହା ପାନ ପାଇଁ ବସିଛୁ, ବଗିଚାରେ ପଥର ସିଢ଼ିର ତୃଣାଚ୍ଛ ସୋପାନରେ ପୁଣି ସେହି ସାପଟି ସନ୍ତର୍ପଣରେ ଆତ୍ମ ପ୍ରକାଶ କଲା ।

"ସେହି ସାପଟା କି ?" କହୁଁ କହୁଁ ମାଆ ମୋ ପାଖକୁ ଧାଇଁ ଆସି ମୋ ହାତ ଧରି ଭୟରେ ଥରିବାକୁ ଲାଗିଲେ ।

ମୁଁ ପଚାରିଲି —"ମାନେ ସେହି ଅଣ୍ଡାଗୁଡ଼ାକର ମାଆ ?"

"ହଁ, ହଁ"—ଅତି କଷ୍ଟରେ ମାଆ ଜବାବ ଦେଲେ ।

ନିଃଶବ୍ଦରେ ଦମ ବନ୍ଦ କରି ଆମେ ପରସ୍ପରର ହାତ ଧରି ଠିଆ ହେଲୁ । ସାପଟା ଥରେ ପଥର ଚାରି ପଟେ ବୁଲି ଦୁର୍ବଳ ଭାବରେ ସିଢ଼ି ଟପି କାନାର ବୁଦା ଭିତରକୁ ଚାଲିଗଲା । ଫୁସ୍‌ଫୁସ୍ କରି କହିଲି—"ସକାଳୁ ସେଟା ବଗିଚା ଭିତରେ ଘୂରି ବୁଲୁଛି ।"

ଦୀର୍ଘଶ୍ୱାସ ଛାଡ଼ି ମାଆ ଚଉକିରେ କ୍ଳାନ୍ତ ଭାବରେ ବସି ହତାଶ ସ୍ୱରରେ କହିଲେ—"ବୋଧ ହୁଏ ବିଚାରୀ ତାହାର ଅଣ୍ଡା ଗୁଡ଼ାକ ଖୋଜୁଛି ।"

ଅସ୍ତଗାମୀ ସୂର୍ଯ୍ୟଙ୍କର ଆଭା ମାଆଙ୍କ ମୁଖ ଉପରେ ପଡ଼ି ଆଖି ଦୁଇଟା ଉଜ୍ଜ୍ୱଳ ନୀଳ ଦିଶୁଥିଲା । ମାଆଙ୍କ କୋମଳ ସୁଗଠିତ କାନ୍ଧ ଉପରେ ହାତ ରଖିଲି ।

ଯେଉଁ ବର୍ଷ ଜାପାନ ବିନା ସର୍ତ୍ତରେ ଆତ୍ମ ସମର୍ପଣ କଲା, ସେହି ବର୍ଷ ଡ଼ିସେମ୍ବର ମାସରେ ଆମେ ଟୋକିଓର ନିଶିକାତା ଷ୍ଟ୍ରୀଟର ଘର ଛାଡ଼ି ଦେଇ ଇଜୁର ଏହି ଘରକୁ ଉଠି ଆସିଲୁ ।

ବାବାଙ୍କ ମୃତ୍ୟୁ ଠାରୁ ମାଆଙ୍କର ସାନ ଭାଇ ଓସ୍ବାଲ୍ଡ ମାମୁଁ ଆମ ସମ୍ପତ୍ତି ବୁଝାସୁଝା କରୁଥିଲେ । ଲଣ୍ଡନ ସହରରୁ ସବୁ କଥାର ପରିବର୍ତ୍ତନ ହେଲା । ମାମୁଁ ମାଆଙ୍କୁ ଜଣାଇ ଦେଲେ ଯେ ଆଗ ପରି ବାବୁଆନା ଆଉ ଚଳିବ ନାହିଁ, ଆମ ଘରଟା ବିକି ଦେଇ ଗାଁରେ ଗୋଟିଏ ଛୋଟ ଘର କିଣି ରହିଲେ ଭାରି ଭଲ ହେବ । ନଭେମ୍ବର ମାସରେ ସେ ମାମୁଁଙ୍କ ଠାରୁ ଜରୁରୀ ଚିଠି ପାଇଲେ ଭାଇକାଉଣ୍ଟ କାଓସ୍ୱାଟାରେ ଘର କିଣିବା ସମ୍ବନ୍ଧରେ । ଜାଗାଟା ଦେଖିବାକୁ ଭଲ, ଉଚ୍ଚ, ପ୍ରାୟ ଅଧ ଏକର ଚାଷ ଜମି ଅଛି, ବଦରି ଫଳ ପାଇଁ ବିଖ୍ୟାତ, ଶୀତ ଦିନେ ଗରମ, ଆଉ ଗରମ କାଳରେ ଥଣ୍ଡା ।

ପର ଦିନ ଦିପହରରେ ମାଆ ମାମୁଁଙ୍କୁ ଅଫିସ୍‌ରେ ଦେଖା କରି ପ୍ରାୟ ସନ୍ଧ୍ୟା ଆଠଟା ବେଳକୁ ଫେରି ଆସିଲେ ଏବଂ ଖାଲି କହିଲେ—"ସବୁ ଠିକ୍ ହୋଇଗଲା ।"

ମୁଁ ଅବାକ ହୋଇ ପଚାରିଲି—'କିନ୍ତୁ ଘରଟା ଯେ ଥରେ ଆଖିରେ ଟିକିଏ ଦେଖିଲ ନାହିଁ ?"

ଡେସ୍କ ଉପରୁ କହୁଣି ଉଠାଇ, ହାତରେ କପାଳ ଚାପି ଧରି, ଦୀର୍ଘ ନିଃଶ୍ୱାସ ଛାଡ଼ି ମାଆ ଜବାବ ଦେଲେ— "ତୋ ଓସ୍ବାଲ୍ଡ ମାମୁଁ କହୁଛି ଘରଟା ଭଲ । ଆମର ଆଖି ଖୋଲିବା ଦରକାର ନାହିଁ । ଯେମିତି ଅଛନ୍ତୁ ସେମିତି ଯାଇ ସେଠାରେ ଉଠିବା ।" ମୁଣ୍ଡ ଟେକି ସେ ମୃଦୁ ହସିଲେ ।

ତା ପରେ କୁଲିମାନେ ନିତି ଆସି ଘର ବଦଳାଇବା ପାଇଁ ଜିନିଷପତ୍ର ସବୁ ବାନ୍ଧାଛନ୍ଦା କରିବାକୁ ଲାଗିଲେ । ଦିନେ ମାମୁଁ ନିଜେ ଆସି ବହିର ମାଲପତ୍ରର ବ୍ୟବସ୍ଥା କରି ଗଲେ । ମୁଁ ଓ ରୁକ୍‌ମଣୀ ଓକିମି ଲୁଗାପଟା ସଜାଡ଼ିବା ଓ ଆବର୍ଜନା ସବୁ ବଗିଚାରେ ନେଇ ପୋଡ଼ିବାରେ ବ୍ୟସ୍ତ ରହିଲୁ । କିନ୍ତୁ ମାଆ ଆମକୁ ଥରେ ମାତ୍ର ସାହାଯ୍ୟ

କଲେ ନାହିଁ । ଯାହାର ତୋଡ଼ଜୋଡ଼ରେ ଦଶ ଦିନ କଟିଗଲା । ଦିନେ ମାଆଙ୍କୁ ପଚାରିଲି—"ତୁମର କଅଣ ଇଜୁଲୁ ଯିବାର ଇଚ୍ଛା ନାହିଁ ?"

ଏକାନ୍ତ ଉଦାସ ଭାବରେ ମାଆ ଜବାବ ଦେଲେ—"ନା । ଖାଲି ତୋହରି ଲାଗି ସେଠାକୁ ଯିବାର କଥା ।"

ଏହି ଅଭାବମୟ ମନ୍ତବ୍ୟରେ ଅବାକ ହୋଇ ଯାଇ ଅନିଚ୍ଛାରେ ପଚାରିଲି—"ଯଦି ମୁଁ ନ ଥାଆନ୍ତି ।"

ହଠାତ୍ ମାଆ କାନ୍ଦି ପକାଇଲେ—"ମୋ ପକ୍ଷରେ ମରଣହିଁ ସବୁ ଠାରୁ ଭଲ ଥିଲା । ଯେଉଁ ଘରେ ତୋ ବାବା ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ, ସେଠାରେ ମରି ପାରିଲେ କୌଣସି ଦୁଃଖ ନ ଥିଲା ।"

ମାଆଙ୍କୁ ଏମିତି ଅସହାୟ କାନ୍ଦଣାରେ ଭାଙ୍ଗି ପଡ଼ିବାର ମୁଁ ଆଗରୁ କେବେ ଦେଖି ନ ଥିଲି— ବାବାଙ୍କ ମୃତ୍ୟୁ ବେଳେ, ମୋ ବିବାହ ବେଳେ, ମୁଁ ଶଶୁର ଘରୁ ଫେରି ଆସିଲା ବେଳେ, ଡାକ୍ତର-ଖାନାରେ ମୋର ମଲା ଛୁଆ ପ୍ରସବ ବେଳେ, ମୋର ଦୀର୍ଘ ଅସୁସ୍ଥତା ବେଳେ, କି ନାଓଜି ଅତ୍ୟନ୍ତ ଅନ୍ୟାୟ କାମ କଲା ବେଳେ ନୁହେଁ । ବାବାଙ୍କ ମୃତ୍ୟୁ ପରେ ଏହି ଦଶ ବର୍ଷ ହେଲା ମାଆଙ୍କର ଶାନ୍ତ ସ୍ୱଚ୍ଛନ୍ଦ ଭାବର ସୁଯୋଗ ନେଇ ନାଓଜି ଓ ମୁଁ ମନ ଇଚ୍ଛା ଦିନ କାଟିଛୁଁ । ଏକ୍ଷଣି ମାଆଙ୍କର ଟଙ୍କା ଖତମ । ମାଆ ଅକୁଣ୍ଠିତ ଚିତ୍ତରେ ସବୁ ପଇସା ଆମ ଦୁଇ ଭାଇ-ଭଉଣୀର ପଛରେ ଖରଚ କରିଛନ୍ତି । ଆଜି ଅସହାୟ ଅବସ୍ଥାରେ ଗୋଟିଏ ଅଜଣା ଗ୍ରାମ୍ୟ ଘରେ ସେ ଦୁଃଖର ସଂସାର ପାତିବାକୁ ବାଧ୍ୟ ହୋଇଛନ୍ତି । ପ୍ରଥମ ଥର ପାଇଁ ମୁଁ ଆବିଷ୍କାର କଲି ଅର୍ଥାଭାବ କି ମାରାତ୍ମକ ଶୋଚନୀୟ ଅସହାୟ ଅବସ୍ଥା ସୃଷ୍ଟି କରି ପାରେ ।

ପର ଦିନ ମାଆଙ୍କର ଦେହ ଖରାପ ହେଲା । କିନ୍ତୁ ଓୟୂାଦା ମାମୁଁ ଆସି ଜଣାଇଲେ, ଆମକୁ ସେହି ଦିନ ଇକୁକୁ ଯିବାକୁ ହେବ । ପ୍ରାୟ ସବୁ ଜିନିଷପତ୍ର ଆଗରୁ ଚାଲି ଯାଇଛି । ମାଆ ପଦେ ହେଲେ କଥା ନ କହି ନଶୀକାଡା ଷ୍ଟ୍ରୀଟର ଘରୁ ବାହାରି ଆସିଲେ । ରେଳ ଗାଡ଼ି ମୋଟ ଉପରେ ଫାଙ୍କା ଥିଲା । ଆମେ ସମସ୍ତେ ବସିବାକୁ ଜାଗା ପାଇଲୁ । ମାମୁଁ ମନେ ମନେ ଗୁଣୁ ଗୁଣୁ ହୋଇ ଗୀତ ବୋଲିଲେ । ମାଆ ଉଦାସୀନ ଭାବରେ ବସି ଥାଆନ୍ତି । ନାଗାଓକାରେ ମଟର ଧରି ପନ୍ଦର ମିନଟ ପରେ ଚଲା ବାଟରେ ପାହାଡ଼ ଆଡ଼କୁ ଆଗେଇଲୁ । ପାହାଡ଼ଟା ଗୋଟିଏ ଗ୍ରାମ ଆଡ଼କୁ ଧୀରେ ଧୀରେ ଉଠି ଯାଇଛି । ତାହାର ଶେଷ ମୁଣ୍ଡରେ ଚୀନା ଢାଞ୍ଚାରେ ତିଆରି ଗୋଟିଏ ସୁନ୍ଦର ବଙ୍ଗଳା । ଚମତ୍କାର ହାଉଆ, ଅପରୂପ ସ୍ନିଗ୍ଧ ଦୃଶ୍ୟ ।

ଅପରାହ୍ନ ତିନଟା । ଶୀତର ଶେଷ ରଶ୍ମି ବଗିଚାରେ ଆସି ପଡ଼ୁଥିଲା । ବଗିଚା ଭିତରେ ବଦର ଗଛରେ ଘେରା ଛୋଟ ପୋଖରୀଟିଏ । କମଳା ଲେମ୍ବୁ ଗଛ ଗୁଡ଼ିଏ, ଧାନ ବିଲ, ଦେବଦାରୁ ବଣ, ସବା ଶେଷରେ ଦୂରରେ ସମୁଦ୍ର ।

ତଳେ ଦୁଇଟି ବଡ଼ ବଖରା—ଗୋଟିଏ ଚୀନା ଧରଣର ବୈଠକଖାନା, ଅନ୍ୟଟି ଦାଲାଣ । ଦୋତାଲାରେ ବିଦେଶୀ କାଇଦାର ଗୋଟିଏ ବଖରାରେ ଏକ ପ୍ରକାଣ୍ଡ ବିଛଣା । ଗାଁରେ ଏକମାତ୍ର ହୋଟେଲରେ ମାମୁଁ ଆମର ଭୋଜନର ବ୍ୟବସ୍ଥା କଲେ । ମାଆ ନାମକୁ ମାତ୍ର ଖାଇ ଦେଇ ଶୋଇ ପଡ଼ିଲେ । ସନ୍ଧ୍ୟା ବେଳକୁ ଦେଖିଲି, ତାଙ୍କର ଦେହରେ ୧୦୨ ଡ଼ିଗ୍ରୀ ଜର । ମାମୁଁ ଯାଇ ଗାଁର ଡାକ୍ତରକୁ ଡ଼ାକି ଆଣିଲେ । ନିଉମୋନିଆ ହୋଇ ପାରେ କହି ଗୋଟିଏ ଇଞ୍ଜେକସନ ଦେଇ ସେ ଚାଲିଗଲେ । ପର ଦିନ ଜର ଛାଡ଼ିଲା ନାହିଁ । ମାମୁଁ ମୋତେ ଦୁଇ ହଜାର ଇୟେନ (ଜାପାନୀ ମୁଦ୍ରା)

ଦେଇ ଚୌକିଓକୁ ଫେରିଗଲେ । ଡାକ୍ତର ପୁଣି ଗୋଟାଏ କଡ଼ା ଇଞ୍ଜେକସନ ଦେଲେ । ରାତିରେ ଜର ଖସିଲା । ମାଆଙ୍କୁ ତିନୋଟା ସିଝା ଅଣ୍ଡା ଓ ଅଧ ଡାଟିଆଏ ଭାତର ମଣ୍ଡ ଖାଇବାକୁ ଦେଲି । ମାଆଙ୍କ ମୁଖ ମଣ୍ଡଳରେ ଗୋଟାଏ ଆନନ୍ଦର ଭାବ ପ୍ରକଟିତ ହେଲା ।

ସେହି ଦିନରୁ ଏ ଅବଧି ଆମେ ଏହି ପାହାଡର ନିର୍ଜନ ଶ୍ରେଣୀର କୁଡ଼ିଆରେ ଦିନ କଟାଉଛୁଁ । ଆମେ ରନ୍ଧାବଢ଼ା କରୁ, ପିଣ୍ଡାରେ ବସି ପଶମ ବୁଣୁ, ଚୀନା ଘରେ ବସି ବହି ପଢ଼ୁ, ଚାହା ପାନ କରୁ—ପୁଣି ଏ କଥାରେ ଦୁନିଆର ବାହାରେ ଏକାନ୍ତ ବୈଚିତ୍ର୍ୟ-ହୀନ ଜୀବନ ଯାପନ କରୁ । ଫେବ୍ରୁଆରୀ ମାସରେ ଗାଁ ଠା ଯାକ ବଦରି ଫଳରେ ଲଦି ଗଲା । ମାର୍ଚ୍ଚ ମାସର ଶେଷ ପର୍ଯ୍ୟନ୍ତ ଫୁଲ ଗୁଡ଼ାକ ଗଛର ଡ଼ାଳ ସବୁକୁ ଆଲୁଅ କରି ରହିଲା । ଗୋଧୂଳି ବେଳେ ମାଆ ଓ ମୁଁ ଚାହା ଖାଇ ବସିଲେ ଫୁଲର ପାଖୁଡ଼ା ଗୁଡ଼ାକ ଝରକା ବାଟେ ଉଡ଼ି ଆସି ଆମ ପିଆଲାରେ ପଡ଼େ । ଅପ୍ରେଲ ମାସରେ ପଶମ ବୁଣିଲା ବେଳେ ଜମି ଚାଷର ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା ହୁଏ । ମାଆ କହନ୍ତି—"ଆମେ ମରି ଯାଇ ପୁଣି ଭିନ୍ନ ମଣିଷ ହୋଇ ବଞ୍ଚିଛନ୍ତି ।" ମଝିରେ ମଝିରେ ମୋର ମନେ ହୁଏ, ଏଠାକାର ଅବିଚ୍ଛିନ୍ନ ଶାନ୍ତି ଭୁଲ୍ଟା ଛଳନା । ମାଆ ଅବଶ୍ୟ ଖୁସିର ବାହାନା କରନ୍ତି । କିନ୍ତୁ ଦିନକୁ ଦିନ ସେ ଶୁଖି ଯାଉଛନ୍ତି । ଆଉ ମୋ ଅନ୍ତର ଭିତରେ ବସା ବାନ୍ଧିଥିବା କଳା ସାପଟା ପରିପୁଷ୍ଟ ହେଉଛି । ମୋର ପ୍ରତ୍ୟେକ କାମ ମାଆଙ୍କର ଦୁଃଖ ବଢ଼ାଇବା ଓ ଶକ୍ତି କ୍ଷୟ କରିବା ପକ୍ଷରେ ଯଥେଷ୍ଟ ।

୨

ଦଶ ଦିନ ଭିତରେ ଗୋଟାକ ପରେ ଗୋଟାଏ ଦୁର୍ଘଟଣା ଘଟିବାକୁ ଲାଗିଲା । ଫଳରେ, ମାଆଙ୍କର ଉଦ୍‌ବେଗ ଓ ଆୟୁ କ୍ଷୟ ସମ ପରିମାଣରେ ଆଗେଇ ଚାଲିଲା ।

ଝଟନେ ଟେଶ୍ୱର ଘଣ୍ଟରେ ହାତ ଧୋଇବା ପାଇଁ ଉଠି ବୈଠକ-ଖାନାର ପରଦା ଆଡ଼େଇ ଦେଲି ବେଳକୁ ଗାଧୁଆ ଘରୁ ଗୋଟାଏ ଆଲୁଅ ଝଶିଲି । ଖାଲି ପାଦରେ ପାଖ ଦରଜା ବାଟେ ଯାଇ ଦେଖିଲି, ଚୂଲି କଡ଼ରେ ଜମା ହୋଇଥିବା ଜାଳେଣି କାଠ ଗଦାଟା ହୁ ହୁ ହୋଇ ଜଳୁଛି । ହଠାତ୍ ଗୃହର ପାଞ୍ଚ ଜଣ ଭୃତ୍ୟ ଧାଇଁ ଆସି ବାଲ୍ଟିରେ ପାଣି ଆଣି କେତେ ମିନଟ ଭିତରେ ନିଆଁ ଲିଭାଇ ଦେଲେ । ଗାଁର ମେୟର, ପୋଲିସ ଓ ଦମକଳ ବିଭାଗର ବଡ଼ କର୍ତ୍ତା ସମସ୍ତେ ଆସି ପହଞ୍ଚିଲେ । ମେୟର ମୃଦୁ ହସି କାରଣ ପଚାରିଲାରୁ, ମୁଁ ଜବାବ ଦେଲି—"ମୋର ଦୋଷରୁ । ଘଣ୍ଟରେ ଦରପୋଡ଼ା କାଠ ଗୁଡ଼ାକ ଲିଭି ଯାଇଛି ଭାବି କାଠ ଗଦା ପାଖରେ ରଖି ଦେଇଥିଲି ।"

କମ ବୟସୀ ପୋଲିସ କର୍ମଚାରୀ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲି—"ଯାହା ହେଉ, ଘରେ ନିଆଁ ଲାଗି ନାହିଁ, ଏତିକି ରକ୍ଷା ।"

ସମସ୍ତେ ଚାଲି ଗଲାରୁ, ପୋଡ଼ା କାଠ ଗଦା କଡ଼ରେ ଏକା ଶୂନ୍ୟ ମନରେ ଠିଆ ହୋଇ ଲୁହ ଛଳ ଛଳ ଆଖିରେ ଆକାଶ ଆଡ଼କୁ ଅନାଇ ଦେଖିଲି, ଭୋର ହେଉଛି ।

ତା ପରେ ମୁହଁ ହାତ ଧୋଇ ମୁଣ୍ଡ କୁଣ୍ଡାଇ ପାଦ ଚପି ଚପି ଯାଇ ଦେଖିଲି, ମାଆ ଲୁଗା ପାଲଟି ଆରାମ ଚୌକିରେ ବସିଛନ୍ତି । ମୁଖରେ ଅପରିସୀମ କ୍ଳାନ୍ତିର ଛାପ । ମୋତେ ଦେଖି ଟିକିଏ ହସି ପଚାରିଲେ—"ବିଶେଷ କିଛି କ୍ଷତି ହୋଇ ନାହିଁ ତ ?"

ଜଳଖିଆ ଖାଇ ସାରି ପୋଡ଼ା କାଠ ସଫା କରିବାରେ ଲାଗିଲି । ହୋଟେଲର ବୁଢ଼ୀ ଓସାକା ଆସି ମୋତେ ପରାମର୍ଶ ଦେଲି; କେତେ ଜଣ ପଡ଼ଶାଙ୍କ ଘର୍କୁ ଯାଇ ସେମାନଙ୍କୁ କିଛି କିଛି ଟଙ୍କା ଦେଇ ଆମର ଗତ ରାତିର ଦୋଷ ପାଇଁ କ୍ଷମା ପ୍ରାର୍ଥନା କରିଆସିବ । ତାହୁଁ

ଶହେ ଇସ୍ପେନର କେଉଁଠା ଷ୍ଟେଟ ଟୋଡ଼ା କରି ତାହା ଉପରେ ଲେଖିଲି— ଛୁଟି ମାର୍ଜନୀୟ ।

ମେୟର, ଦମକଳ ବାହିନୀର କର୍ତ୍ତା ଓ କେତେ ଜଣ ପଡ଼ିଶାଙ୍କ ଘରକୁ ଯାଇ କାନ୍ଦ କାନ୍ଦ କହିଲି—"ଅନୁଗ୍ରହ କରି ମୋର ଗତ ରାତିର ଅପରାଧ କ୍ଷମା କରନ୍ତୁ ।" ସମସ୍ତେ ମୋତେ ସହାନୁଭୂତି ଦେଖାଇ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । ଖାଲି ନର୍ଶୀସ୍ବାମୀଙ୍କ ତରୁଣୀ ସ୍ତ୍ରୀ ମୋତେ ଖୁବ୍ ବକିଲେ ।

ପର ଦିନଠୁଁ ବଲ କାମରେ ଲାଗି ଗଲି । ମୋ ପକ୍ଷରେ ଏ ଧରଣର କାମ ନୂଆ ନୁହେଁ । ଲଢେଇ ବେଳେ ଯୁଦ୍ଧ କ୍ଷେତ୍ରରେ ମୋତେ କୁଲିଗିରି କରିବାକୁ ପଡ଼ିଛି । ଲଢ଼େଇ ସରିଲା ପରେ ମଜା କବିତାଟିଏ କାଗଜରେ ବାହାରିଥିଲା—

ଗତ ବର୍ଷ କିଛି ହୋଇ ନି
ତା ଆଗ ବର୍ଷ କିଛି ହୋଇ ନି
ଏବଂ ତା ଆଗ ବର୍ଷ କିଛି ହୋଇ ନି ।

ଯେତେବେଳେ ମୋତେ ଜୋର କରି ଧରି ନେଇ କନା ଜୋତା ପିନ୍ଧାଇ ଫଉଜରେ କୁଲି କରି ଖଟାଇଲେ, ସେତିକି ବେଳେ ଯୁଦ୍ଧର ବୀଭତ୍ସତା ଛଡ଼ା ଅନ୍ୟାନ୍ୟ ଦିଗ ମୋ ନଜରରେ ପଡ଼ିଥିଲା । ମୋର ଯୁଦ୍ଧରେ ଯୋଗ ଦେବାର ପର ଦିନ ମୂଷଳ ଧାରାରେ ବର୍ଷା ହେଲା । ପ୍ରାୟ ପାଞ୍ଚ ଶହ ନର ନାରୀ ପାହାଡ଼ ତଳେ ଛିଡ଼ା ହୋଇ ବର୍ଷାରେ ଭିଜି ଜଣେ ଅଫିସରଙ୍କର ଉପଦେଶସବୁ ଶୁଣିଲୁ । ଦିନ ସାରା ଓଦା ଲୁଗାରେ ଜୁଡ଼ୁବୁଡ଼ୁ ହୋଇ ପିଠିରେ ମାଟି ବୋହି ବୋହିଲି । ପରଦିନଠା ଦଳେ ଶ୍ରମିକଙ୍କ ସାଙ୍ଗରେ ଘାଟିରେ ଦଉଡ଼ି ଟାଣି ଟାଣି କଟିଲା । ଦିନେ ସକାଳେ ଜଣେ ତରୁଣ ଅଫିସର ମୋତେ କରତ ଚିରା କାଠ ଗଦାଟା ପହରା ଦେବାକୁ ନିର୍ଦ୍ଦେଶ

ଦେଲି । ସେଠାରେ ବସି ଖଣ୍ଡିଏ ବହି ପଢିଲି, ଭୋଜନ କଲି ଏବଂ ଟିକଏ ଶୋଇଲି । ପର ଦିନଟା ମୋତେ ଛୁଟି ମିଳିଲା । ତା ପରଠୁଁ ଦିନେ ଛଡ଼ା ଦିନେ ଟାଟକାଓସ୍କୀଙ୍କୁ ଯାଇ ନିଜ ଭାଗର କଠିନ ପରିଶ୍ରମକରି ଆସୁଥିଲି । ଫଳରେ, ମୋ ଶରୀର ଅଧିକ ସୁସ୍ଥ ହେଲା । ଆଜି ଯାଏ କାୟିକ ଶ୍ରମ ମୋତେ କାବୁ କରି ପାରେ ନା । ମୋର ଯେତିକି ଯୁଦ୍ଧର ଅଭିଜ୍ଞତା ବାକି ଅଛି, ତାହା ହେଉଛି ଦିନେ ମାତ୍ର କିନା ଜୋତା ।

ମାଆଙ୍କର ଦେହ କ୍ରମେ କ୍ରମେ ଭୀଷଣ ଖରାପ ଆଡ଼କୁ ଗତି କଲା । କିଆଁ ଲାଗିଲା ପରଠୁଁ ମାଆ ନିଦରେ ଝାଲବୁଡ଼ି ହୁଅନ୍ତି ଏବଂ ଜୋରରେ ପବନ ବହୁଥିଲେ ଯେତେ ରାତି ହେଉ ପଛକେ ବାରମ୍ବାର ଉଠି ଆସି ସବୁ ଠିକ୍ ଅଛି କି ନା ଦେଖି ଯାଆନ୍ତି । ବେଳେ ବେଳେ ବିଲକୁ ଯାଇ ସେ ମୋ କାମ ମଧ୍ୟ ଦେଖନ୍ତି । ଦିନେ ମୋ କାମ ଦେଖିବାକୁ ଯାଇ ବିଲରେ ମାଆ ହଠାତ୍ କହିଲେ—"ଲୋକେ କହନ୍ତି, ଯେଉଁମାନେ ଗ୍ରୀଷ୍ମର ଫୁଲ ଭଲ ପାଆନ୍ତି ସେମାନଙ୍କର ମୃତ୍ୟୁ ଗ୍ରୀଷ୍ମ କାଳରେ ହୁଏ । ଜାଣେ ନା, କଥାଟା କେତେ ଦୂର ସତ ।" ମୁଁ ବାଇଗଣ ଗଛରେ ପାଣି ଦେଉଥିଲି, କିଛି ଜବାବ ଦେଲି ନାହିଁ ।

ମାଆ ଫେର୍ ମୃଦୁ କଣ୍ଠରେ କହିଲେ—"ମୁଁ ଗୋଲାପ ଫୁଲ ସବୁଠୁଁ ବେଶୀ ଭଲ ପାଏ । ଗୋଲାପ ଯେଉଁମାନଙ୍କର ପ୍ରିୟ, ହୁଏତ ସେମାନଙ୍କୁ ଶୀତ ଥର ମରିବାକୁ ହୁଏ ।"

ଦୁହେଁ ହସିଲୁ ।

ମାଆ ହସି ହସି କହିଲେ—"ଟିକଏ ଥକା ନେବୁ ନାହିଁ ? ଆଜି ତୋ ସାଙ୍ଗରେ ଗୋଟାଏ କଥା ଅଛି ।"

"କି କଥା ?"

ମାଆଙ୍କ ପଛେ ପଛେ ଯାଇ ମଣ୍ଡର ଫୁଲର ମଞ୍ଚା ତଳେ ବସିଲି ।

"ନାଓଜି ବଞ୍ଚିଛି ।"

ମୋର ସାରା ଶରୀର ଯେମିତି ପଥର ହୋଇଗଲା ।

"ପାଞ୍ଚ ଛଅ ଦିନ ତଳେ ତୋ ମାମୁଁ ଠାରୁ ଚିଠି ପାଇଛି । ଜଣେ କର୍ମଚାରୀ ଦକ୍ଷିଣ ପ୍ରଶାନ୍ତ ସାଗରରୁ ଫେରିଛି । ସେ ନାଓଜି ସାଙ୍ଗରେ ଏକା ୟୁନିଟରେ କାମ କରେ । ସେ କହୁଥିଲା, ନାଓଜି ଭଲ ଅଛି, ଶୀଘ୍ର ଫେରିବ । କିନ୍ତୁ ସେ ଦାରୁଣ ଅଫିମିଆ ହୋଇଛି । ନାଓଜି ଫେରି ଆସିଲେ, ତାହାକୁ ଏହି ପାହାଡ଼ ଜାଗାରେ ଅଟକାଇ ରଖିଲେ ଭଲ ହେବ । ଦ୍ୱିତୀୟ କଥା ହେଉଛି, ତୋ ମାମୁଁ ଆହୁରି ଜଣାଇଛନ୍ତି ଯେ ଆମର ସବୁ ଟଙ୍କା ସରି ଗଲାଣି । ସେ ଆଗ ପରି ଆଉ ଟଙ୍କା ପଠାଇ ପାରିବେ ନାହିଁ । ତେଣୁ ସେ ପ୍ରସ୍ତାବ କରିଛନ୍ତି, ତୋତେ ଯଥା ଶୀଘ୍ର ବାହା ଦେବାକୁ, ନଚେତ୍ କାହାରି ଘରେ କାମରେ ଲଗାଇ ଦେବାକୁ ଚାହାନ୍ତି ।"

"ଚାକରାଣୀ ?"

"ନା, ଆମର ଜଣେ ଦୂର ସମ୍ପର୍କୀୟ ଜମିଦାରଙ୍କର ସାନ ସାନ ପୁଅ ଝିଅଙ୍କୁ ଦେଖାଶୁଣା କରିବୁ ।"

"ଦୁନିଆରେ ଆଉ କିଛି କାମ ନାହିଁ ?"

"ତୋ ମାମୁଁର ମତରେ, ଆଉ କୌଣସି କାମ ତୋ ପକ୍ଷରେ ସୁବିଧାଜନକ ହେବ ନାହିଁ ।"

ବିକାର ଗ୍ରସ୍ତ ରୋଗୀ ପରି ଚିତ୍କାର କଲି—"ନା, ଏ ଧରଣର କଥା ମୁଁ ଢେର ଶୁଣିଛି । ତୁମେ ପରା ଦିନେ କହିଥିଲ ଯେ ଖାଲି ମୋରି ପାଇଁ ଇଜୁକୁ ଆସିଛ, ଆଉ ମୁଁ ନ ଥିଲେ ତୁମେ ମରି ଯାଇ ଥାଆନ୍ତ ? ସେଇଥି ପାଇଁ ତ ମୁଁ ତୁମକୁ ଛାଡି ଦେଇ ପାରେ

ହେଲେ ଦୁଃଖ ନାହିଁ । ଆଜ ମୋ ପାଦରେ କନା ଜୋତା କାହିଁକ ? କାରଣ ତୁମେ ଯେଉଁ ପନ ପରବା ଖାଇବାକୁ ଭଲ ପାଅ, ମୁଁ ସେ ସବୁ ଫଳାଇବାକୁ ଚେଷ୍ଟା କରୁଛୁ । ଆଜ ଯେମିତ ଶୁଣିଲ ତୁମର ନାଓଜ ଫେର ଆସିଛୁ, ସେମିତ ମୋତେ ଅନାୟସରେ ହୁକୁମ ଦେଉଛ ଚାକରାଣୀର କାମ କରବାପାଇଁ । ଯଦ ତୁମର ଅବସ୍ଥା ଖରାପ ହେଲ କ ଟଙ୍କା ସରଗଲ, ତାହା ହେଲେ ଦାମୀକା ପୋଷାକପତ୍ରସବୁ କମ୍ବା ଘରଟା ବକ ଦେଲେ ତ ଭଲ ହୁଅନ୍ତା । ଯାହା ହେଉ ମୁଁ ଗାଁରେ କଛୁ କାମ କର ପାରେ । ତୁମର ସବୁ ସ୍ନେହ ନାଓଜ ପାଇଁ । ନାଓଜ ସମ୍ବନ୍ଧ ମୋର କେବେ ପଡ଼େ ନାହିଁ । ତେଣୁ ଆମେ ସମସ୍ତେ ଏକାଠି ରହିଲେ ଆମ ତନ ଜଣଙ୍କ ଜୀବନ ଅତଷ୍ଟ ହେବ । ଏବେ ଖାଲ ତୁମେ ଓ ନାଓଜ ରୁହ । ମୁଁ ଏଣିଣି ଚାଲିଯିବ ।"

ମୁଁ ଉଠି ଛିଡ଼ା ହେଲ ।

"କାଜ୍ କୋ !" ମାଆ କଠୋର ସ୍ୱରରେ ଡାକଲେ । ମୁହାଁ । ମୁହାଁ ଠିଆ ହେଲରୁ ମାଆ ମୋ ଠାରୁ ଅଧିକ ଲମ୍ବା ଦିଶିଲେ ।

"ତୁମେ ମୋତେ ଠକାଇଛ, ମାଆ । ଯେତେ ଦନ ଯାଏ ନାଓଜ ଆସି ନ ଥିଲ, ସେତେ ଦନ ଯାଏ ମୁଁ ତୁମର ଦାସୀ ହୋଇ ଥିଲ । ଏକ୍ଷଣି ତୁମର ପ୍ରୟୋଜନ ସରଲ, ମୋତେ ଦୂରେଇ ଦେଉଛ ।"

ମୁଁ କାନ୍ଦି କାନ୍ଦି କାନ୍ଦିଲ ।

"ତୁ ଭାର ବୋକା"—ରାଗରେ ଓ ଉତ୍ତେଜନାରେ ମାଆଙ୍କର ସ୍ୱର ଥରଲ ।

"ମାଆର ସ୍ନେହ ମୋର ଏକମାତ୍ର ଭରସା, ସେତକ ମୋର ଜୋର ।"

ମାଆ ହଠାତ୍ ମୁଣ୍ଡ ବୁଲାଇ ନେଲେ । ତାଙ୍କର ଆଖିରେ ଲୁହ ।

“ମୁଁ ଏଠାରୁ ଦୂରେଇ ଗଲେ ସବୁ ଠିକ୍ ହୋଇଯିବ । ମୋର ବି ଯିବାର ଜାଗା ଅଛି ।”

ଏହା କହି ଦେଇ ମୁଁ କଳଘରକୁ ଯାଇ କାନ୍ଦି କାନ୍ଦି ମୁହଁ ହାତ ଧୋଇଲି । ଲୁଗା ପାଲଟି ଦୋଚାଲିର ଘରେ ଯାଇ ମୁହଁ ମାଡ଼ି ଶୋଇ ପ୍ରଚଣ୍ଡ ବେଗରେ କାନ୍ଦିବାକୁ ଲାଗିଲି ।

ସଞ୍ଜ ବେଳେ ମାଆ ନିଃଶବ୍ଦରେ ଘରକୁ ଆସି ଆଲୁଅ ଜଳାଇଲେ ଏବଂ ମଧୁର ସ୍ୱରରେ ମୋ ନାମ ଧରି ଡାକିଲେ । ଝରକା ପାଖରେ ଗୋଟିଏ ସୋଫାରେ ବସି ପଡ଼ି ସେ ମୃଦୁ ହସି କହିଲେ—“ତୋ ମାମୁଁକୁ ଜବାବ ଦେଲି, ମୋ ପୁଅ ଝିଅଙ୍କର ଚିନ୍ତା ଯେମିତି ସେ ମୋ ଉପରେ ଛାଡ଼ି ଦେଉ । କାଜୁଲୋ, ମୋର ସବୁ ଦାମିକା ପୋଷାକ ବିକି ଦେଇ ମନ ଇଚ୍ଛା ଖରଚ ତୁଲାଇବି । ତୋତେ ଏଣିକି ନିଜ ବଳରେ ମୂଲିଆଙ୍କ ପରି ଆଉ ଖଟିବାକୁ ପଡ଼ିବ ନାହିଁ ।”

ଆଖି ଫେରାଇ ମୁଁ ବିଛଣାରେ ଚୁପଚାପ ବସି ରହିଲି ।

“କାଜୁଲୋ, ତୁ ଯେ କହିଲୁ ତୋର କେଉଁଠାକୁ ଯିବାର ଜାଗା ଅଛି । ମିଷ୍ଟର ହୋସୋଡ଼ା ?”

ମୁଁ କିଛି ଜବାବ ଦେଲି ନାହିଁ ।

ମାଆ ଦୀର୍ଘଶ୍ୱାସ ଛାଡ଼ି କହିଲେ—“ବହୁତ ଦିନ ତଳର ଗୋଟାଏ ଘଟଣାର କଥା କହୁଛି । ଯେତେ ବେଳେ ତୁ ସ୍ୱାମୀ ତ୍ୟାଗ କରି ନଣିକାଟା ଷ୍ଟ୍ରୀଟକୁ ଫେରି ଆସିଲୁ, ସେତେ ବେଳେ ମୁଁ ତୋତେ ପଦେ ହେଲେ କଟୁ କଥା କହି ନ ଥିଲି । କିନ୍ତୁ ଗୋଟାଏ କିଛି ଘଟିଥିଲା, ଯେଉଁଥି ପାଇଁ ମୁଁ କହିବାକୁ ବାଧ ହୋଇଥିଲି ଯେ ତୁ ମୋତେ ଠକାଇଛୁ । ମନେ ପଡ଼ୁଛି ତୋର ? ତୁ କାନ୍ଦି ପକାଇଥିଲୁ । କହିଥିଲି, କାରଣ ତୋ ସ୍ୱାମୀର ତୁଣ୍ଡରୁ ଶୁଣିଥିଲି ଯେ ଶିଳ୍ପୀ

ହୋସୋଡାଙ୍କ ସହିତ ତୋର କୁଆଡ଼େ ଗଭୀର ପ୍ରେମ୍ ଅଛି । ତାହା ଶୁଣି ମୁଁ ମର୍ମାହତ ହୋଇଥିଲି । ହୋସୋଡ଼ା ବିବାହିତ ଏବଂ ତାଙ୍କର ପୁଅ ଝିଅ ଅଛନ୍ତି । ଜାଣେ, ତୁ ତାଙ୍କୁ ଯେତେ ଭଲ ପାଉଥାଉ ନା କାହିଁକି, ଏହି ପ୍ରେମ ନିଶ୍ଚୟ ବ୍ୟର୍ଥ ହେବ ।"

"କି ଅଜବ କଥା ! ଏହା ମୋ ସ୍ୱାମୀଙ୍କର ଗୋଟାଏ ମିଥ୍ୟା ସନ୍ଦେହ ।"

"ବୋଧ ହୁଏ । ତାହା ହେଲେ ତୁ କେଉଁଠାକୁ ଯିବାକୁ କହୁଥିଲୁ ?"

"ହୋସୋଡ଼ାଙ୍କ ଠାକୁ ନୁହେ ।"

"ସତେ ? ତେବେ କେଉଁଠାକୁ ?"

"ପ୍ରତ୍ୟେକ ମଣିଷର କିଛି ନା କିଛି ଗୁପ୍ତ କଥା ଥାଏ ।"

ମାଆ ଅପ୍ରସ୍ତୁତ ଭାବରେ ମୃଦୁ ହସିଲେ—"ଯଦି ତୋର ଗୁପ୍ତ କଥା ମଙ୍ଗଳକର ହୁଏ, ମୋର ତାହା ଠାରୁ ଅଧିକ କାମ୍ୟ ଆଉ କିଛି ନାହିଁ । ନିତି ସକାଳେ ମୁଁ ତୋ ବାବାଙ୍କ ଆତ୍ମାକୁ ପ୍ରାର୍ଥନା କରେ, ତୁ ସୁଖରେ ରହ ।"

ହଠାତ୍ ମନେ ପଡ଼ିଲା ବାବାଙ୍କ ସହିତ ନାସୁନୋକୁ ଗାଡ଼ିରେ ବୁଲିବାକୁ ଯିବା ବେଳେ ବାଟରେ ଗୋଟାଏ ଜାଗାରେ ଓହ୍ଲାଇ ଶରତର ଫୁଟିଲା ଫୁଲରେ ମନୋହର ଶୋଭା ଦେଖିଥିଲି । ତା ପରେ ବାବା ଓ ମୁଁ ହୋଓସୁ ହ୍ରଦରେ ମଟର ବୋଟରେ ବିହାର କରିଥିଲୁ । ମୁଁ କାକ ଚକ୍ଷୁ ଜଳରେ ସନ୍ତରଣ କରିଥିଲି ।

ବିଛଣାରୁ ଉଠି ପଡ଼ି ମାଆଙ୍କର ଆଣ୍ଠୁ ଜାବୁଡ଼ି ଧରି କହିଲି—"ମାଆ, ମୋତେ କ୍ଷମା କର ।"

ଆମର ଆନନ୍ଦର ସୀମା ନ ଥିଲା । କିନ୍ତୁ ନାଓଙ୍କ ଦକ୍ଷିଣ ପ୍ରଶାନ୍ତ ସାଗରରୁ ଫେରିଲାଠାରୁ ଆମର ନରକବାସ ଆରମ୍ଭ ହେଲା ।

## ୩

ଲଗାଣ ବର୍ଷା ହେଉଛି । ଯାହା କଲେ ବି ମନ ଖରାପ ହୋଇଯାଏ । ଆଜ ବାରନ୍ଦାରେ ଖଣ୍ଡିଏ ବେତ ଚଉକି ପକାଇ ବସିଲି । ହାଲୁକା ଗୋଲାପୀ ରଙ୍ଗ ସାଙ୍ଗରେ ଗାଢ଼ ନୀଳ ରଙ୍ଗର ପଶମ ମିଳାଇ ଗଲା ବସନ୍ତରେ ଆରମ୍ଭ ହୋଇଥିବା ସୋଏଟରଟା ଶିଥିଳ ହାତରେ ବୁଣିବାକୁ ବସିଲି । ବୁଣୁ ବୁଣୁ ମୋର ଖିଆଲ ହେଲା, ମେଘାଛନ୍ନ ଧୂସର ଆକାଶ ସାଙ୍ଗରେ ଏହି ପଶମର ହାଲୁକା ଗୋଲାପୀ ରଙ୍ଗ ଏମିତି ଚମତ୍କାର ଭାବରେ ଖୋଲିଛି ଯେ ରଙ୍ଗର ଏପରି ଅପୂର୍ବ ସ୍ନିଗ୍ଧ ସାମଞ୍ଜସ୍ୟ ଭାଷାରେ ଅବର୍ଣ୍ଣନୀୟ । ଜୀବନରେ ପ୍ରଥମେ ଉପଲବ୍ଧି କଲି ସୁରୁଚି କାହାକୁ କହନ୍ତି । ମନେ ମନେ ପଶମକୁ ଧନ୍ୟବାଦ ଦେଲି । ମାଆ ଏହି ସୁନ୍ଦର ରଙ୍ଗ ପସନ୍ଦ କରିଥିଲେ । ଭାବିଲି, ମୋ ମାଆ ପରି ଏମିତି ମାଆ ଆଉ କେଉଁଠି ନାହାନ୍ତି । ଠିକ୍ ସେହି ମୁହୂର୍ତ୍ତରେ ମୋ ମନ ଭିତରେ ଆଶଙ୍କା ଓ ଆତଙ୍କ ଭରିଗଲା, ହୁଏତ ନାଓଙ୍କ ଓ ମୁଁ ଦୁହେଁ ମିଶି ମାଆଙ୍କ ଉପରେ ଅତ୍ୟାଚାର କରି ପ୍ରାୟ ଶେଷ କରିଦେବାକୁ ବସିଲୁ । ଯେତେ ଭାବେ ସେତେ ଦୃଢ଼ ବିଶ୍ୱାସ ଉପୁଜେ ଯେ ଆମର ଦୁର୍ଦ୍ଦିନ ଘନେଇ ଆସୁଛି । ଗୋଟାଏ ଅଜଣା ଆତଙ୍କରେ ମୋ ଅନ୍ତର ଶିହରିତ ହେଲା ଏବଂ ମନେ ହେଲା, ଏମିତି ଭାବରେ ବଞ୍ଚି ରହିବା ଅସମ୍ଭବ । ଆଙ୍ଗୁଳିଗୁଡ଼ାକ ଅବଶ ହୋଇଗଲା, ବୁଣା କଣ୍ଟା ଦୁଇଟା କୋଳ ଉପରେ ପଡ଼ିଗଲା । ଆଖି ବୁଜି ମୁଣ୍ଡ ଟେକି ନିଜର ଅଜାଣତରେ ଚିତ୍କାର କଲି—"ମାଆ !"

ଘରର କୋଣରେ ମାଆ ଖଣ୍ଡିଏ ବହି ପଢୁଥିଲେ, ଅବାକ ହୋଇ ପଚାରିଲେ—"କଅଣ ହେଲା ?"

ସବୁ କିଛି ଗୋଳମାଳ ହୋଇଗଲା । ଅହେତୁକ ଉଚ୍ଚ ଗଳାରେ ଜବାବ ଦେଲି—"ଜାଣ ମାଆ, ଶେଷ ଅବଧି ଗୋଲାପଗୁଡ଼ାକ ଫୁଟିଲା ।"

ବହୁ ଦିନ ତଳେ ମାମୁଁ ଫ୍ରାନ୍ସରୁ ଏହି ଗାଢ଼ ବାଇଗଣି ଗୋଲାପ ଗଛଟି ଆଣିଥିଲେ । ଆମେ ନିଶିକାନ୍ତା ଷ୍ଟ୍ରୀଟର ଘରୁ ଉଠାଇ ଆଣି ଏହି ଘରେ ଲଗାଇଥିଲୁ । ସକାଳେ ଲକ୍ଷ୍ୟ କରିଥିଲି, ଗୋଟାଏ ଗୋଲାପ ଫୁଟିଛି । କିନ୍ତୁ ବର୍ତ୍ତମାନର ଅପ୍ରସ୍ତୁତ ଭାବ କଟାଇବା ପାଇଁ ଟିକିଏ ଉଚ୍ଛ୍ୱସିତ ହୋଇ କହିଲି, ସତେ ଯେମିତି ମୁଁ ଏକ୍ଷଣି ତାହା ଦେଖିଲି ।

ମାଆ ଶାନ୍ତ କଣ୍ଠରେ କହିଲେ—"ହଁ, ଜାଣେ । ତୋ ନିକଟରେ ଏସବୁ ଜିନିଷର ମୂଲ୍ୟ ଅଲଗା ।"

"ବୋଧ ହୁଏ । ମୋ ଲାଗି କଅଣ ତୁମର ଦୁଃଖ ହୁଏ ?"

"ନା । ମୁଁ ଖାଲି କହିବାକୁ ଚାହେଁ ଯେ ତୋର ସ୍ୱଭାବଟା ସେମିତିକା । ଗୋଲାପ କଥା ତୁ ଏମିତି ଭାବରେ କହିଲୁ, ଯେମିତି ମନେ ହେଲା ଯେ ତୁ ଜିଅନ୍ତା ମଣିଷର କଥା କହୁଛୁ ।"

"ମୋ ନିଜର କିଛି ଛୁଆ ପିଲା ନାହାନ୍ତି ବୋଲି ବୋଧ ହୁଏ ।"

ଏତିକି କହି ଦେଇ ଅପ୍ରସ୍ତୁତ ହେଲି । ଲାଜରେ ମୋ ଗାଲ ଦୁଇଟା ଜଳିବାକୁ ଲାଗିଲା ।

କିଛି ମନ୍ତବ୍ୟ ନ କରି ମାଆ ପୁଣି ବହିରେ ମନ ଦେଲେ ।

କେତେ ସପ୍ତାହ ତଳେ ଏକ ଗ୍ରୀଷ୍ମର ସନ୍ଧ୍ୟାରେ ଫିକା ଚେହେରା ଧରି ନାଓଜି ଅପ୍ରତ୍ୟାଶିତ ଭାବରେ ବଗିଚାରେ ପ୍ରବେଶ

କରି କହିଲି—“ଘର ପସନ୍ଦର କ ମାରାତ୍ମକ ନମୁନା ! ଗୋଟାଏ ସାଇନ ବୋର୍ଡ ଟଙ୍ଗାଉ ନାହିଁ କାହିଁକି ?”

ମୋ ସହିତ ପ୍ରଥମ ଦର୍ଶନରେ ଏହି ସମ୍ଭାଷଣ !

କିଛି ସମୟ ମାଆର ବିଛଣା ପାଖରେ ବସି ଘରଟା ବୁଲି ଦେଖିବା ପାଇଁ ସେ ଉଠିଗଲା । ମୁଁ ତାହା ପଛେ ପଛେ ଗଲି ।

“ମାଆକୁ କେମିତିକା ଦେଖିଲୁ ?”

“ଭାରି ରୋଗଣା । ଢେର୍ ଆଗରୁ ତାହାର ମରିଯିବା ଉଚିତ ଥିଲା । ଆଜିର ଦୁନିଆରେ ତାହା ଭଳି ଲୋକ ପକ୍ଷରେ ବଞ୍ଚି ରହିବା ନିରର୍ଥକ ।”

“ମୋତେ କେମିତିକା ଦେଖୁଛୁ ?”

“ତୋର ଦେହେରା ରୁକ୍ଷ ହୋଇ ଯାଇଛି । ମୁହଁ ଦେଖି ମନେ ହେଉଛି ଦୁଇ ତିନି ଜଣ ପୁରୁଷ ଜୁଟିଛନ୍ତି । ଏଠାରେ ଭଲ ମାଲ ମିଳିବ ?”

ହୋଟେଲରୁ ବୁଝିଲି, ମାଲ ସବୁ ଯାଇଛି । ସେ କଥା ନାଓଜକୁ ଜଣାଇବାରୁ ତାହାର ମୁଖ ରାଗରେ କଳା ପଡିଗଲା । ମୋ ଠାରୁ ହୋଟେଲର ଠିକଣା ଜାଣି ସେ ସେହି ଆଡ଼େ ବାହାରିଗଲା । ମାଆକୁ ଜଣାଇଲି ସେ କଥା । ମାଆର ଅଧର କୋଣରେ ହସର ରେଖା ଫୁଟିଲା—“ତାହା ହେଲେ ସେ ନିଶ୍ଚୟ ଅଫିମ ଖୁଉଛି । ଆଜି ଆମେ ତିନି ଜଣ ଏହି ଘରେ ଶୋଇବା । ନାଓଜର ବିଛଣାଟା ମଝିରେ ବିଛାଇ ଦେ ।”

ନାଓଜ ବହୁତ ରାତିରେ ଫେରିଲା । ଆମେ ତିନି ଜଣ ବଡ଼ ମଶାରିଟା ଭିତରେ ପଶିଲୁ ।

ପର ଦିନ ସକାଳେ ବିଛଣାରେ ଶୋଇ ରହି ସମୁଦ୍ରର ଶୋଭା ଦେଖୁଁ ଦେଖୁଁ ନାଓଜ ସିଗାରେଟ ଟାଣିବାକୁ ଲାଗିଲା । ମାଆଙ୍କୁ ପଚାରିଲା—"ତୁମ ଜିଭରେ କି ବ୍ୟଥା ହୋଇଛି ?"

ମୃଦୁ ହସି ମାଆ ନୀରବ ରହିଲେ ।

ବନ୍ଧୁ ବାନ୍ଧବଙ୍କ ସହିତ ଦେଖା କରିବା ଛଳନାରେ ମାଆଙ୍କ ଠାରୁ ଦୁଇ ହଜାର ଇୟେନ ନେଇ ନାଓଜ ଅପରାହ୍ଣରେ ଟୋକିଓ ଅଭିମୁଖେ ଯାତ୍ରା କଲା । ଦଶ ଦିନ ଯାଏ ସେ ଫେରିଲା ନାହିଁ । ତାହାର ଆଲମାରି, ବହିପତ୍ର ଓ ଅନ୍ୟାନ୍ୟ ଜିନିଷପତ୍ର ସବୁ ନେଇ ଚେଡାଙ୍କର ଘରେ ରଖିଲୁ । ସେ ଫେରିଲେ ସେ ସବୁ ପୂଜା ହୋଇ ରହିବ । ଗୋଟିଏ ଖୋଲା କାଠ ବାକ୍ସରୁ ଅନ୍ୟମନସ୍କ ଭାବରେ ତାହାର ଖଣ୍ଡିଏ ଟିପାଖାତା ଉଠାଇନେଲି । ମଲାଟ ଉପରେ ଲେଖା ହୋଇଥିଲା "ଚନ୍ଦ୍ରମଲ୍ଲିକା ପତ୍ରିକା ।" ମନେ ହେଲା, ଯେମିତି ନିଦ ଔଷଧର ବିଷ କ୍ରିୟାରେ ଅସୁସ୍ଥ ଥିଲା ବେଳେ ସେହି ଦିନଲିପିଟି ଲେଖା ହୋଇଛି । ପଢିବାକୁ ଲାଗିଲି —

"ଅସହ୍ୟ ମୃତ୍ୟୁ ଯନ୍ତ୍ରଣା । ମାନବ ଇତିହାସରେ ଅଦ୍ୱିତୀୟ, ଅତୁଳନୀୟ ଓ ଅତଳ ସ୍ପର୍ଶୀ ଏହି ନରକ ଯନ୍ତ୍ରଣାକୁ ତୁଛ ମଣ ନାହିଁ ।

ଦର୍ଶନ, ଧର୍ମ, ଆଦର୍ଶ, ଶୃଙ୍ଖଳା, ନିଷ୍ଠା, ଶୁଚିତା— ସବୁ ମିଛ । ଲୋକେ କହନ୍ତି ଉଶିଜିମାର ମଠର ଫୁଲର ବୟସ ହଜାରେ ବର୍ଷ, ଆଉ କୁମାନୋର ମଠର ଫୁଲର ବୟସ ଶହେ ଶତାବ୍ଦୀ । ସେହି ଗୁଚ୍ଛ ଗୁଚ୍ଛ ମଠର ଫୁଲର ଶୋଭାରେ ମୋର ମନ ପ୍ରାଣ ନାଚି ଉଠେ ।

ଡାକ୍ତର ଫାଉଷ୍ଟଙ୍କର ଦୁଃସାହସିକ ଉକ୍ତି : କୁମାରୀର ହସ ନିକଟରେ ଇତିହାସ, ଦର୍ଶନ, ଶିକ୍ଷା, ଧର୍ମ, ଆଇନ, ରାଜନୀତି, ଅର୍ଥନୀତି, ଇତ୍ୟାଦି ଜ୍ଞାନର ସବୁ ଶାଖା ତୁଚ୍ଛ ।

ସ୍ୱୟଂ ଗେଟେଙ୍କ ସାମନାରେ ମୁଁ ଶପଥ କରି କହି ପାରେ, ମୋର ଅସାଧାରଣ ସାହିତ୍ୟ ପ୍ରତିଭା ଅଛି । ପାଠକକୁ ଅଭିଭୂତ କଲା ଭଳି କରୁଣ ରସର ଅବତାରଣା କିମ୍ବା ସୃଷ୍ଟିହୀନ ଅସାମାନ୍ୟ ଉପନ୍ୟାସ ଲେଖିବା ମୋ ଦ୍ୱାରା ଅସମ୍ଭବ ନୁହେଁ, ଯଦି ଲଜ୍ଜା ଆସି ବାଧା ନ ଦିଏ । ଏକମାତ୍ର ପାଗଳ ଲୋକେହିଁ ଯଥେଷ୍ଟ ଶ୍ରଦ୍ଧାରେ ଉପନ୍ୟାସ ପଢ଼ନ୍ତି । ଲେଖାରେ କୃତ୍ରିମ ନ ହେଲେ ଭଲ । ମୋର ଉପନ୍ୟାସ ଚୂହିବ ଖାପଛଡ଼ା ।

ଜାପାନର ଶ୍ରେଷ୍ଠ ନିର୍ବୋଧ ଏଠାରେ ଉପସ୍ଥିତ । ମୋ ତୁଳନାରେ ତୁମେ ସବୁ ବିଚକ୍ଷଣ । ତୁମ୍ଭମାନଙ୍କର ମଙ୍ଗଳ ହେଉ ।

ଜାଣେ ନା, କିଏ ମନ୍ଦ ନୁହେଁ ।
କ୍ଳାନ୍ତିକର ଏହି ଦୁଶ୍ଚିନ୍ତା ।
ଟଙ୍କା ଲୋଡ଼ା ।
ଟଙ୍କା ନ ପାଇଲେ ମୋର ନିଦରେ ସ୍ୱାଭାବିକ ମୃତ୍ୟୁ !

ଡାକ୍ତରଖାନାରେ ହଜାରେ ଇୟେନ ଧାରି ହୋଇଛି । ଆଜି ଗୋଟିଏ ବନ୍ଧକୀ ଦୋକାନର କିରାଣୀକୁ ଗୋପନରେ ଘରକୁ ଡାକି ଆଣି ବନ୍ଧକ ଦେଲି ଭଳି ଦାମିକା ଜିନିସ ନେଇ ମୋତେ ଟଙ୍କା ଦେବାକୁ କହିଲି । ଷ୍ଟାଣ୍ଡ ଉପରେ ରହିଥିବା ପ୍ଲାଷ୍ଟାରରେ ତିଆରି ଭେନାସର ଡାଲିଆ ଫୁଲପରି ତୁଷାର ଶୁଭ୍ର ସୁକୋମଳ ହାତଟି ପାଇଁ ମୋତେ ମାତ୍ର ପଚିଶ ଇୟେନ ଦେବାକୁ ରାଜି ହେଲା । ଗଦାଏ ପୁରୁଣା ବହି ଦେଇ ଜମା ପାଞ୍ଚ ଇୟେନ ଯୋଗାଡ଼ ହେଲା ।

ଯେଉଁମାନେ ମୋତେ ସମାଲୋଚନା କରନ୍ତି, ମୋର ମନେ ହୁଏ, ଯଦି ସେମାନେ ମୋତେ ଖାଲି ମରିବାକୁ କହନ୍ତେ ତାହା ହେଲେ ସେଇଟା ବରଂ ଭାରି ଭଲ ହୁଅନ୍ତା । ଆମ ଭିତରେ ଭଲ ଲୋକ ବୋଲି କେହି ନାହାନ୍ତି । ନିର୍ବୋଧ, ଭୂତ, ପ୍ରେତ, କୃପଣ, ପାଗଳା କୁକୁର— ଖାଲି ବଡ଼ ବଡ଼ କଥା ।

ଜାପାନ ମରି ପଡ଼ି ଯୁଦ୍ଧ କରୁଛି । ମୋତେ ତାହାର ଭିତରକୁ ଟାଣି ନେଇ ମୃତ୍ୟୁ ସାମନାରେ ଠିଆ କରାଇବେ । ମୁଁ ବରଂ ନିଜ ହାତରେ ମରିବି ।

ମାନ୍ୟଗଣ୍ୟ ଲୋକେ ମୋ ସହିତ ମିଳାମିଶା କରିବାକୁ ଚାହାନ୍ତି ନାହିଁ । ମୋତେ ସମସ୍ତେ ନିଷ୍କର୍ମା, ମିଥ୍ୟାବାଦୀ, ବଡ଼ଲୋକି. ଉଦାସୀନ ବୋଲି କହନ୍ତି । ଦୁନିଆଟା ମୋ ପ୍ରତି ବିମୁଖ । ମୋଟ କଥା ହେଉଛି, ଆତ୍ମହତ୍ୟା ଛଡ଼ା ମୋର ଅନ୍ୟ ଗତି ନାହିଁ ।

ମାଆର ଭଲ ମଣିଷ ପଣିଆର ପଟାନ୍ତର ନାହିଁ । ତାହାର କଥା ମନେ ପଡିଲେ ମୋ ଆଖିରେ ଲୁହ ଭରିଯାଏ । ମୋର ମୃତ୍ୟୁ ଭିତରେ ତାହାକୁ କହିବି, ଦୟା କରି ଅନ୍ତତଃ ଥରେ ମୋତେ କ୍ଷମା କର ।

## ନବ ବର୍ଷର କବିତା

ବର୍ଷ ଗୁଡ଼ାକ
ଏବେ ବି ଆଖିରେ ଦେଖି ପାରନ୍ତି ନି
ତଥାପି ସେହି ଟଗ୍ରଟ ବଗ ଛୁଆସବୁ
କିପରି ଲଭନ୍ତି ଏପରି ପୂର୍ଣ୍ଣତା !

ନିଜକୁ ଜଣେ ଅଭିଜାତ ବୋଲି ନ ଭାବି କୌଣସି ପୁରୁଷ ପକ୍ଷରେ ବଞ୍ଚିବା ଅସମ୍ଭବ ।

ମୁଁ ମଣିଷକୁ ଘୃଣା କରେ । ସେମାନେ ବି ମୋତେ ଘୃଣା କରନ୍ତି ।

ବୁଦ୍ଧିର ପରୀକ୍ଷା ।

ଯାହା ହେଉ ଏହି ବିଷୟରେ କୌଣସି ସନ୍ଦେହ ନାହିଁ ଯେ ବଞ୍ଚି ରହିବାକୁ ହେଲେ ମଣିଷକୁ ଛଳନାର ଆଶ୍ରୟ ନେବାକୁ ପଡ଼ିବ ।

ଉତ୍ତର ଭିକ୍ଷା କରି ଲେଖିଛି ଚିଠିଟିଏ —

ତୁମର ଜବାବ ।

ଦୟା କରି ଜବାବ ଦିଅ ।

ଆଉ ଏମିତିକା ଜବାବ ଦିଅ, ଯେମିତି ମୋ ମନ ଖୁସି ହେଉ ।

ସବୁ ରକମ ଅପମାନ ଆଶଙ୍କା କରି ଆପଣା ମନରେ ଜଳି ପୋଡ଼ି ମରୁଛି ।

ଅଭିନୟ ନୁହେଁ । ବାସ୍ତବିକ ନୁହେଁ ।

ମୁଁ ତୁମ ନିକଟରେ ଭିକ୍ଷା ମାଗୁଛି ।

ଯେମିତି ଲାଜରେ ମରି ଯାଉଛି ।

ଏତେ ଟିକିଏ ବଡ଼ାଇ କରି କହୁ ନାହିଁ ।

ପ୍ରତିଦିନ ତୁମ ଜବାବର ଅପେକ୍ଷାରେ କଟେ । ଅନ୍ତରହିଁ ଭୟରେ କମ୍ପୁଥାଏ ।

ମୋତେ ଧୂଳରେ ମିଶି ଯିବାକୁ ଲୁହ ନା ।

ମୁଁ ଯେମିତି ଶୁଣିବାକୁ ପାଏ କାନ୍ଥଗୁଡ଼ାକ ମୋତେ ଦେଖି ଚୁପା ହସ ହସୁଛନ୍ତି । ଗଭୀର ରାତିରେ ବିଛଣାରେ ପଡ଼ି ମୁଁ ଛଟପଟ ହୁଏ ।

ଭଉଣୀ ମୋର !”

ଏ ପର୍ଯ୍ୟନ୍ତ ପଢ଼ି "ଚନ୍ଦ୍ରମଲ୍ଲିକା ପତ୍ରିକା"ଟି ବନ୍ଦ କରି କାଠ ବାକ୍ସ ଭିତରେ ରଖି ଦେଲି । ଝରକା ଖୋଲି ଦେଲା ଏବଂ ବର୍ଷା ଧାରରେ ଧୂଆଁଳିଆ ବଗିଚା ଆଡ଼କୁ ଅନାଇ ସେହି ସବୁ ଦିନର କଥା ଭାବିବାକୁ ଲାଗିଲି ।

ତା ପରେ ଛଅ ବର୍ଷ ଗଡ଼ି ଯାଇଛି । ନାଓଜିର ଅଫିମ ନିଶା ଶେଷ ଅବଧି ମୋ ବିବାହ-ବିଚ୍ଛେଦର କାରଣ ହେଲା । ଡାକ୍ତର-ଖାନାରେ ବାକି ହେବା ଯୋଗୁଁ ନାଓଜି ପ୍ରାପ୍ୟ ଟଙ୍କା ପାଇଁ ମୋତେ ଉତ୍ତ୍ୟକ୍ତ କରୁଥିଲା । ସେତିକି ବେଳେ ମୋର ବିବାହ ହୋଇଥିଲା, ନାଓଜି ଠାରୁ ଚିଠି ପାଇଲି—"ଏତେ ଲଜ୍ଜା ଓ ଉଦ୍‌ବେଗରେ ଦିନ କାଟୁଛି ଯେ ତୋ ସହିତ ଦେଖା କିମ୍ବା ଟେଲିଫୋନରେ କଥା ବି କହି ପାରୁ ନାହିଁ । ଓସେକର ହାତରେ ଔପନ୍ୟାସିକ ଉହ୍ୟେହାରା ଜିରୋଙ୍କ ଠାକୁ ଟଙ୍କା ପଠାଇବୁ । ତୁ ଭଦ୍ରଲୋକଙ୍କୁ ଚିହ୍ନୁ । ମନ୍ଦ ଲୋକ ବୋଲି ତାଙ୍କର ବଦନାମ ଅଛି, ପ୍ରକୃତରେ ସେ ଠିକ୍ ସେମିତିକା ନୁହନ୍ତି । ଟଙ୍କା ପାଇଲେ ସେ ମୋତେ ଫୋନ କରି ଜଣାଇ ଦେବେ । ଏହି ନିଶା କଥାଟା ମାଆଠାରୁ ଗୋପନ ରଖିବାକୁ ଚାହେଁ । ସେ ଜାଣିବା ଆଗରୁ ମୁଁ ନିଜକୁ ସୁଧାରି ନେବି । ତୋ ଠାରୁ ଟଙ୍କା ପାଇଲେ ଡାକ୍ତରଖାନାର ସବୁ ଦେଣା ପରିଶୋଧ କରିଦେବି । ତା ପରେ ସ୍ୱାସ୍ଥ୍ୟ-ଉଦ୍ଧାର ସକାଶେ ଆମ ପାହାଡ଼ ଘରକୁ ଯିବି । ଋଣମୁକ୍ତ ହେଲା ଦିନ ହିଁ ମୁଁ ନିଶା ଏକାବେଳେ ଛାଡ଼ି ଦେବି ।" ମୋ ନିଜର ଗୋଟିଏ ଗହଣା ବିକି କିଛି ଟଙ୍କା ଓସେକର ହାତରେ ଗୋପନରେ ଉହ୍ୟେହାରାଙ୍କ ଠାକୁ ପଠାଇ ଦେଲି । କିନ୍ତୁ ବରାବର ପରି ଏଥର ମଧ୍ୟ ନାଓଜିର କଥା ମିଥ୍ୟା ପ୍ରମାଣିତ ହେଲା । ଆରୋଗ୍ୟ

ହେବା ପାଇଁ ସେ ପାହାଡ଼ ଘରକୁ ଗଲ ନାହିଁ, ବରଂ ତାହାର ନିଶାର ଶେଷ କ୍ରିୟା ଆରମ୍ଭ ହେଲ । ଟଙ୍କାର ତାଗିଦରେ ତାହାର ଚିଠିର ଧାର ଉଦ୍‌ବେଗରେ ଏମିତ ରୂପ ଧାରଣା କଲ ଯେ ତାହାକୁ ଆର୍ଶୀବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତି ଚିଠିରେ "ନିଶା ଛାଡ଼ି ଦେବି ବୋଲି ମୁଁ ଶପଥ କଲି" ନାମକୁ ମାତ୍ର ଲେଖା ଥାଏ । ସେ ମିଛ କହୁଛି ବୋଲି ବୁଝି ପାରିଲେ ସୁଦ୍ଧା, ପ୍ରତି ଥର ମୁଁ ନିଜର ଗୋଟିଏ ଲେଖାଏଁ ଗହଣା ଓଟେସକର ହାତକୁ ବଢ଼ାଇ ଦିଏଁ ଉପେନ୍ଦ୍ରବାବୁଙ୍କ ନିକଟରେ ଯଥା ସମୟରେ ଟଙ୍କାଟା ପହଞ୍ଚାଇ ଦେବା ପାଇଁ ।

ସେତେବେଳେ ମୁଁ ମେଘର ରାଜ୍ୟରେ ବିଚରଣ କରୁଥିଲି । କୌଣସି ରକମ ଦୁଶ୍ଚିନ୍ତା ମୋତେ ଛୁଇଁ ପାରୁ ନ ଥିଲ । ତଥାପି କ୍ରମାଗତ ଟଙ୍କା ବାହାରି ଯାଇ ଏକ ସମୟରେ ଅଙ୍କଟା ଦୁଃସ୍ୱପ୍ନର ଆକାର ଧାରଣ କଲାରୁ, ମୁଁ ଭୟଙ୍କର ଖିନ୍ନ ହେଲି । ଦିନେ ରଙ୍ଗା-ଲୟରୁ ବାହାରି ସିଧା ସଳଖେ ଉପେନ୍ଦ୍ରବାବୁଙ୍କ ଘରକୁ ଗଲି ।

ଉପେନ୍ଦ୍ରବାବୁ ଏକା ଘରେ ବସି ଖବର କାଗଜ ପଢ଼ୁଥିଲେ । ବାଙ୍ଗରା, କଳା, ଅସୁନ୍ଦର । ଜାପାନୀ ପୋଷାକରେ ସେ ଏକା ସାଙ୍ଗରେ ବୁଢ଼ାଳିଆ ଓ ପାଗଳିଆ ମାଲୁମ ହେଉଥିଲେ ।

"ମୋ ସ୍ତ୍ରୀ ଝିଅକୁ ନେଇ ରସଦ ଆଣିବାକୁ ଯାଇଛି"— ଉପେନ୍ଦ୍ରବାବୁ ମୋତେ ଦେଖି ନିଜ ସ୍ତ୍ରୀର କୌଣସି ବାନ୍ଧବୀ ବୋଲି ଭାବିଲେ । ନାଓଜିର ଭଉଣୀ ବୋଲି ପରିଚୟ ଦେବାରୁ, ସେ ଜୋରରେ ହସି ହସି କହିଲେ—"ବାହାରିବା ?" ଜବାବରେ ଅପେକ୍ଷା ନ କରି କୋଟ ଓ ଚଟି ପିନ୍ଧି ସେ ମୋ ଆଗେ ଆଗେ ବାରନ୍ଦା ଟପି ବାହାରି ଗଲେ ।

ଶୀତର ସନ୍ଧ୍ୟା । ହେମାଳ ପବନ ବହୁଥିଲ । ଟୋକିଓ ଥିଏଟରର ପଛ ପଟେ ଗୋଟିଏ ଘରର ମାଟି ତଳର ଗୋଟିଏ

କୋଠରୀରେ ଯାଇ ହାଜର ହେଲେ । ଦଳ ଦଳ ହୋଇ ଗରାଖ-ମାନେ ଲମ୍ବା ସରୁ ବଖରାଟିରେ ଟେବୁଲକୁ ଘେରି ବସି ମଦ ଖାଉ-ଥିଲେ । ଉପ୍ନେହାର୍ ଓ ମୁଁ ଦୁଇ ଗିଲାସ ଲେଖାଏଁ ମଦ ଖାଇଲୁ ।

ମଦ ସାଙ୍ଗରେ ସିଗାରେଟ ଟାଣୁ ଟାଣୁ ଉପ୍ନେହାର୍ କହିଲେ—"ଯଦି ତୁମ ଭାଇ ମଦ ଆଡ଼କୁ ଢଳି ଥାଆନ୍ତା, ତେବେ ଭଲ ହୋଇ ଥାଆନ୍ତା । ମୋର ବି ଦିନେ ଅଫମ ନିଶା ଥିଲା । ଜାଣେ, ଲୋକେ ତାହାକୁ କେତେ ହୀନ ମଣନ୍ତି । ମାତ୍ର ମଦ ପ୍ରତି ଲୋକଙ୍କର ଅଜବ ପକ୍ଷପାତ ଅଛି । ମୋର ଇଚ୍ଛା ତୁମ ଭାଇକୁ ମଦ ଧରାଇବି ।"

"ଜୀବନରେ ପ୍ରଥମ ଥର ନବ ବର୍ଷ ଦିନ ଆମ୍ଭ ଡ୍ରାଇଭରର ବନ୍ଧୁକୁ ମାତାଲ ଅବସ୍ଥାରେ ଦେଖି ମୁଁ ଏକାବେଳେ ଅଭିଭୂତ ହୋଇ ଯାଇଥିଲି ।"

"ହୁଏତ ତୁମ ଭାଇ ମଦ ଧରିଲେ ତାହାର ନିଜର ଉପକାର ହୁଅନ୍ତା । ହେଉ, ଚାଲ ।"

ମୁଁ ବିଲ୍ ଟା ଚୁକ୍ତି କଲି ।

"ତୁମ ପାଇଁ ଗୋଟାଏ ଟାକ୍ସି ଡାକେ । ତୁମେ ବରଂ ଘରକୁ ଯାଅ ।"

ଅନ୍ଧକାର ସିଡ଼ିରେ ତଳୁ ଉପରକୁ ଉଠି ଆସିଲୁ । ଉପ୍ନେହାର୍ ମୋର ଗୋଟିଏ ପାହାଚ ଆଗରେ ଥିଲେ, ହଠାତ୍ ବୁଲି ପଡ଼ି ମୋତେ ଚୁମା ଦେଲେ । ଓଠ ଶକ୍ତ କରି ଚୁପି ଧରି ତାଙ୍କର ଚୁମ୍ବନ ଗ୍ରହଣ କଲି ।

ବାହାରି ଆସିଲାରୁ ଉପ୍ନେହାର୍ ମୋ ପାଇଁ ଗୋଟାଏ ଟାକ୍ସି ଡାକିଲେ । କିଛି କଥା ନ କହି ଆମେ ପରସ୍ପର ଠାରୁ ବିଦାୟ ନେଲୁ ।

ଦିନେ ସ୍ୱାମୀ ସାଙ୍ଗରେ ଅଯଥା ଝଗଡ଼ା ହେଲାରୁ ମନ ଖରାପ କରି ବସିଛି, ହଠାତ୍ କହି ଦେଲି—"ମୋର ଜଣେ ମନର ମଣିଷ ଅଛି ।"

"ଜାଣେ । ହୋସୋଡ୍ଡା ନା ?"

ମୁଁ ନୀରବ ରହିଲି ।

ଯେବେ ସ୍ୱାମୀ ସହିତ ଝଗଡ଼ା ହୁଏ, ଏହି କଥା ଉଠେ । ଦିନେ କ୍ରୋଧରେ ସ୍ୱାମୀ ପଚାରିଲେ, ମୋ ପେଟର ଛୁଆଟି କଅଣ ହୋସୋଡ୍ଡାର ? ଉତ୍ତରରେ ମୋର ସର୍ବାଙ୍ଗ ଥରିଲା । ହୋସୋଡ୍ଡାଙ୍କ ଅଙ୍କିତ ଛବି ସମ୍ବନ୍ଧରେ ମୋର ଏପରି ଅନ୍ଧ ଭକ୍ତି ଥିଲା ଯେ ଜଣାଶୁଣା ସମସ୍ତଙ୍କୁ କହି ବୁଲୁଥିଲି, ଏପରି ଜଣେ ଲୋକର ସ୍ତ୍ରୀ ହୋଇ ପାରିଲେ ଜୀବନଟା ଅପରୂପ ହୁଅନ୍ତା । ସୁତରାଂ ସମସ୍ତେ ଭୁଲ ବୁଝୁଥିଲେ । ମୁଁ ବି କଥାଟା ପ୍ରତ୍ୟାହାର ନ କରିବାରୁ ପରିସ୍ଥିତି ଜଟିଳ ହେଲା । ଫଳରେ, ମୋ ଶରୀର ଭିତରେ ଘୁମନ୍ତ କ୍ଷୁଦ୍ର ମାନବ ଶିଶୁଟି ପ୍ରତି ମୋ ସ୍ୱାମୀଙ୍କର ସନ୍ଦେହ ଉପୁଜିଲା । ଆମ ଦୁହିଁଙ୍କ ଭିତରୁ କେହି ବିବାହ ବିଚ୍ଛେଦ କଥା ଉଠାଇଲୁ ନାହିଁ, ଅଥଚ ପରିବେଶ ଦିନକୁ ଦିନ ଖରାପ ହେଲା । ମୁଁ ମାଆଙ୍କ ଠାକୁ ଫେରି ଆସିଲି । ମୃତ ଶିଶୁ ପ୍ରସବ ପରେ, ଅସୁସ୍ଥ ହୋଇ ବିଛଣା ଧରିଲି । ତାହା ଆଗରୁ ସ୍ୱାମୀ ସହିତ ମୋର ସମ୍ପର୍କ ଶେଷ ହୋଇ ଯାଇଥିଲା ।

ମୋ ବିବାହ ବିଚ୍ଛେଦ ବ୍ୟାପାରରେ ନିଜକୁ ଅପରାଧୀ ମନେ କରି ନାଓଜି କାନ୍ଦି କାନ୍ଦି ନିଜର ମରଣ କାମନା କଲା । ମୁଁ ତାହାକୁ କହିଲି—"ଉପେହାରାଙ୍କ ସହିତ ମୋର ଆଳାପ ହୋଇଛି । ଚମତ୍କାର ଲୋକ । ମଝିରେ ମଝିରେ ତିନଟେ ମିଶି ମଦ ଖାଇଲେ, ବେଶ୍ ମଜା ହୁଅନ୍ତା । ଯଦି ତୁ ଶଗ୍ଧା ଗୁଉଲ ମଦ ଧରୁ, ସେହି

ଖରଚ ଯୋଗାଇବା ମୋ ପକ୍ଷରେ କଠିନ ହେବ ନାହିଁ । ଡାକ୍ତରଖାନାର ଧାର ପାଇଁ ଗୋଟାଏ ବ୍ୟବସ୍ଥା ହେବ ।"

ମୋ କଥା ଶୁଣି ନାଓଜ ଆନନ୍ଦରେ ଗଦଗଦ ହେଲା । ସେହି ରାତିରେ ମୋ ଠାରୁ ଟଙ୍କା ନେଇ ଭଦ୍ରଲୋକଙ୍କ ଘରକୁ ଧାଇଁଲା । ଉପନ୍ୟାସଙ୍କ ପ୍ରଶଂସାରେ ପଞ୍ଚମୁଖ ହେଲ ଏବଂ ନାଓଜ ଠାରୁ ତାଙ୍କର ବହି ସବୁ ନେଇ ପଢିବାକୁ ଲଗିଲ । ମୁଁ ତାଙ୍କର ଜଣେ ସମର୍ଥକ ବୋଲି ଜାଣି ନାଓଜ ଅବାକ ହେଲା । ପ୍ରାୟ ନିତି ରାତିରେ ନାଓଜ ଉପନ୍ୟାସିଙ୍କ ସାଙ୍ଗରେ ମଦଖଟିକୁ ଯାଇ କ୍ରମେ କ୍ରମେ ମଦ ନିଶାରେ ମଶଗୁଲ ହୋଇଗଲା ।

ତା ପରେ ଛଅଟି ବର୍ଷ କଟି ଯାଇଛି ।

ହଁ, ନାଓଜର ଅବସ୍ଥା ନିଶ୍ଚୟ ଶୋଚନୀୟ । ଅଦ୍ୟାବଧି ଉଦ୍ଧାରର ସବୁ ବାଟ ବନ୍ଦ । ମରଣର ଆଶାରେ ସେ ବୋଧ ହୁଏ ନିତି ମାତାଲ ହୁଏ ।

ନାଓଜ ଟିପା ଖାତାରେ ଲେଖିଛି— କିଏ ଯେ ମନ୍ଦ ନୁହେ ତାହାତ ଜାଣେ ନା । ଏହା ପଢି ମୁଁ ନିଜକୁ, ଏପରିକି ମୋ ମାଆଙ୍କୁ ସୁଦ୍ଧା ପତିତଭ୍ରଷ୍ଟା ବୋଲି ମନେ କରୁଛି ।

## ୪

ଆଜି ସକାଳେ ହଠାତ୍ ଯୀଶୁଙ୍କର ଉକ୍ତି "ସର୍ପ ପରି ସତର୍କ ଓ କପୋତ ପରି ନିରୀହ" ମୋର ମନେ ପଡ଼ିଲା । ଦମ୍ଭ ଧରି ମୁଁ ତାହାଙ୍କୁ ପ୍ରଥମେ ଚିଠି ଲେଖିଲି :

"ମୁଁ ନାଓଜର ଭଉଣୀ । ଯଦି ମୋତେ ଭୁଲି ଯାଇଥିବେ, ଦୟା କରି ଥରେ ମନେ ପକାଇବାକୁ ଚେଷ୍ଟା କରିବେ ।

ନାଓଜ ପୁଣି ବେହେଡ଼ା ହୋଇ ଆପଣଙ୍କୁ ଉତ୍ତ୍ୟକ୍ତ କରୁ-ଥିବାରୁ, ପ୍ରଥମେ କ୍ଷମା ମାଗୁଛି । ଆଜ ମୋ ନିଜ ପାଇଁ ଆପଣଙ୍କ ଠାରୁ କିଛି ଭିକ୍ଷା ଚାହେଁ ।

ଆପଣଙ୍କ ସହିତ ମୁଁ ଗୋଟିଏ ବିଷୟ ଆଲୋଚନା କରିବାକୁ ଚାହେଁ । ହୁଏତ ତାହା କୌଣସି ତରୁଣୀ ପକ୍ଷରେ ଅଶାଳୀନ, ମାତ୍ର ମୁଁ ଏ ଅବସ୍ଥାରେ ଆଉ ରହି ପାରୁ ନାହିଁ । ସୁତରାଂ ଆପଣଙ୍କୁ ଅନୁରୋଧ କରୁଛି ମୋର ନିରାଭରଣ ଅନୁଭୂତିଗୁଡ଼ିକ ଶୁଣି ବାଟ ବତାଇ ଦେବା ପାଇଁ ।

ଗଲା କାଲି ସର୍ବାଙ୍ଗରେ ଅସହ୍ୟ ବେଦନା ସହିତ ଜ୍ୱର ବି ଥିଲା । ଦି ପହରେ ଜଣେ ଚାଷୀ ଝିଅ ମେଘରେ ତିନ୍ତି ତିନ୍ତି ଆସି ଲୁଗା ବଦଳରେ ଚାଉଳ ଦେଇଗଲା । ସେ ମୋତେ ପଚାରିଲା— ଏମିତିକା ଆଉ କେତେ ଦିନ ଚାଲିବ ?

ଜବାବ ଦେଲି— ବଡ଼ ଜୋରରେ ବର୍ଷେ ଖଣ୍ଡେ ।

ମୋ ଆଖି ଲୁହରେ ଛଳଛଳ ହେଲା । ଝୁଣି ପଡ଼ିଲା ଦୁଇଟି କଥା ମୋ ମନ ଭିତରେ ଘୂରିଲା— ବାସ୍ତବ ଓ କଳ୍ପନା । ବାସ୍ତବ ସମ୍ବନ୍ଧରେ ମୋର କିଛି ଧାରଣା ନାହିଁ । ସେହି କାରଣରୁ ମୋର ବଞ୍ଚି ରହିବା ସମ୍ଭବ ହେଉଛି । ମାଆ ପ୍ରାୟ ଅଥର୍ବ । ନାଓଜର ମାନସିକ ଅସୁସ୍ଥତା ତ ଆପଣଙ୍କୁ ଅବିଦିତ ନାହିଁ । ମୁଁ ପରିଷ୍କାର ଦେଖି ପାରୁଛି, ମୁଁ ଦିନକୁ ଦିନ ଆପଣାର ଅସ୍ତିତ୍ୱ ନିଃଶେଷ କରୁଛି । ଏହା ମୋ ପକ୍ଷରେ ଅତୀବ ଅସହ୍ୟ । ତେଣୁ ମୁଁ ପରିତ୍ରାଣ ଚାହେଁ ।

ଏଥର ମୁଁ ମୋ ମାଆ ଓ ନାଓଜକୁ ଦ୍ୱିଧାହୀନ ଭାଷାରେ ଜଣାଇ ଦେବାକୁ ଚାହେଁ, କିଛି ଦିନ ହେଲା ମୁଁ ଜଣକୁ ନିବିଡ଼ ଭାବରେ ଭଲ ପାଉଛି ଏବଂ ତାଙ୍କର ରକ୍ଷିତା ହୋଇ ରହିବି ।

ତାଙ୍କର ସଂକ୍ଷିପ୍ତ ସ୍ୱାକ୍ଷର ହେଉଛି ଏମ୍. ସି. । ଆପଣଙ୍କ ପରି ତାଙ୍କର ରୂପସୀ ସ୍ତ୍ରୀ ଓ ଝିଅଟିଏ ଅଛନ୍ତି । ତାଙ୍କର ସ୍ତ୍ରୀକୁ ମୁଁ କେବେ ହେଲେ ଦେଖି ନାହିଁ । ତେବେ ଶୁଣିଛି, ତାଙ୍କର ସ୍ୱଭାବ ଅତିଶୟ ମଧୁର । ତାହାଙ୍କ କଥା ଭାବିଲେ ନିଜକୁ ଜଘନ୍ୟ ମନେ ହୁଏ । ତଥାପି ମୋର ବର୍ତ୍ତମାନ ଜୀବନ ଅଧିକ ଭୟାବହ ଥିବାରୁ, ମୁଁ ମୋର ଏହି ପ୍ରେମକୁ ଯେ କୌଣସି ମତେ ଚରିତାର୍ଥ କରିବି । ଏପରି ଅବସ୍ଥାରେ ଯଦି ଏମ୍. ସି. କହନ୍ତି ଯେ ମୋତେ ବରଦାସ୍ତ କରିବା ତାହାଙ୍କ ପକ୍ଷରେ ଅସମ୍ଭବ, ତାହା ହେଲେ ମୋର କହିବାର କିଛି ନାହିଁ । ଆପଣଙ୍କୁ ମୋର ଏକମାତ୍ର ଅନୁରୋଧ, ଆପଣ ତାହାଙ୍କୁ ଦୟା କରି ପଚାରିବେ ମୋ ସମ୍ବନ୍ଧରେ ତାଙ୍କର କି ଧାରଣା । ସେ କଅଣ ମୋତେ ବର୍ଷା ଝଡ଼ ଆକାଶରେ ଇନ୍ଦ୍ରଧନୁ ପରି ଭାବିଛନ୍ତି, ଆଉ ଇତି ମଧ୍ୟରେ ତାହା କଅଣ ଧୋଇଧାଇ ନିଃଶେଷ ହୋଇ ଯାଇଛି ? ଯଦି ତାହା ହୁଏ, ତେବେ ମୁଁ ମୋ ମନର ଆକାଶରୁ ଇନ୍ଦ୍ରଧନୁକୁ ପୋଛି ପକାଇବି ।

ଜବାବ ପାଇଁ ପ୍ରାର୍ଥନା କରେ ।”

ଦ୍ୱିତୀୟ ଚିଠି —

“ଆପଣଙ୍କ ଠାରୁ କିଛି ଜବାବ ନ ପାଇ ପୁଣି ଚିଠି ଲେଖି ବସିଲି । ଆଗ ଚିଠିଟି ଅବଶ୍ୟ ଅତ୍ୟନ୍ତ କୂଟ ଷଡ଼ଯନ୍ତ୍ରରେ ପୂର୍ଣ୍ଣ । ବୋଧ ହୁଏ ଆପଣ ତାହା ଧରି ପାରିଥିବେ । ହଁ, ସେ କଥା ସତ । ଆପଣ ହୁଏତ ଭାବିଛନ୍ତି ଯେ ଜୀବନ ଧାରଣ ନିମନ୍ତେ ଅର୍ଥ ସଂସ୍ଥାନ କରିବା ମୋର ଉଦ୍ଦେଶ୍ୟ । ତାହା ତ ଅସ୍ୱୀକାର କରୁ ନାହିଁ । ଯାହା ହେଉ, କ୍ଷମା କରିବେ, ମୁଁ ଆପଣଙ୍କୁ ଜଣାଇବାକୁ ଚାହେଁ ଯେ ଖାଲି ମୂରବିର ସନ୍ଧାନ ମୋର ଉଦ୍ଦେଶ୍ୟ ହୋଇଥିଲେ ମୁଁ ବିଶେଷ କରି ଆପଣଙ୍କୁ ବାଛି ନ ଥାଆନ୍ତି । ମୋର ଧାରଣା, ବହୁ ଧନୀ ବୃଦ୍ଧ

ମୋର ଘର ବହନ କରିବାକୁ ରାଜି । ଏପରିକି, କିଛି ଦିନ ତଳେ, ମୋ ପାଖକୁ ଗୋଟାଏ ବିବାହର ପ୍ରସ୍ତାବ ଆସିଥିଲା । ଆପଣ ଭଦ୍ରଲୋକଙ୍କୁ ଚିହ୍ନିଥିବେ । ତାଙ୍କର ବୟସ ଷାଠିଏ ଉପରେ, ବିପତ୍ନୀକ, ଶିଳ୍ପ ଆକାଦେମିର ସଭ୍ୟ, ସ୍ୱନାମଧନ୍ୟ ଶିଳ୍ପୀ, କଣିକାଡା ଷ୍ଟ୍ରୀଟରେ ଆମର ପ୍ରତିବେଶୀ ଥିଲେ, ବେଳେ ବେଳେ ସଭା ସମିତିରେ ତାହାଙ୍କ ସହିତ ଭେଟ ହେଉଥିଲା । ସେ ଜଣକ ଜରିଆରେ ମାଆଙ୍କ ପାଖକୁ ମୋତେ ବିଭା ହେବା ଲାଗି ପ୍ରସ୍ତାବ ପଠାଇଥିଲେ । ବିଶେଷ କିଛି ଚିନ୍ତା ନ କରି ମୁଁ ଜବାବ ଦେଲି— ବର୍ତ୍ତମାନ ବିବାହରେ ମୋର ଆଦୌ ରୁଚି ନାହିଁ । ଦୁଇ ଦିନ ପରେ, ମୋ ଚିଠି ପାଇବା ଆଗରୁ, ମୋ ଜବାବ କଥା କିଛି ନ ଜାଣି, ଭଦ୍ରଲୋକ ଅପ୍ରତ୍ୟାଶିତ ଭାବରେ ଆମ ଘରେ ଆସି ଉପସ୍ଥିତ ହେଲେ । ମାଆ ଅସୁସ୍ଥ ଥିବାରୁ, ମୁଁ ନିଜେ ତାହାଙ୍କୁ ଅଭ୍ୟର୍ଥନା କଲି । ସ୍ପଷ୍ଟ ଭାବରେ ତାଙ୍କୁ ଜଣାଇଲି— ଆପଣଙ୍କ ପ୍ରସ୍ତାବ ମୋ ପକ୍ଷରେ କୌଣସିମତେ ସମ୍ଭବପର ବୋଲି ମନେ ହେଉ ନାହିଁ । ଝାଳ ପୋଛି ଭଦ୍ରଲୋକ ଅଧୈର୍ଯ୍ୟ ସ୍ୱରରେ କହିଲେ— ଆଶା କରେ, ଆଉଥରେ ବିବେଚନା କରି ଦେଖିବ । ହୁଏତ ମୁଁ ତୁମକୁ ମାନସିକ ଆନନ୍ଦ ଦେଇ ପାରିବି ନାହିଁ, ମାତ୍ର ତୁମକୁ ପାର୍ଥିବ ସୁଖ ଦେବାର ଯଥେଷ୍ଟ କ୍ଷମତା ମୋର ଅଛି । ମୁଁ ଜବାବ ଦେଲି—ନା, ଧନ୍ୟବାଦ । ମୁଁ ସନ୍ତାନ ଚାହେଁ । ଅର୍ଥରେ ମୋର ସେତିକି ଆସକ୍ତି, ଯେତିକି ସନ୍ତାନକୁ ମଣିଷ କରିବା ନିମନ୍ତେ ପ୍ରୟୋଜନ । ଭଦ୍ରଲୋକ ଅପ୍ରସ୍ତୁତ ଭାବରେ ହସି ହସି କହିଲେ—ତୁମ ପରି ଜଣେ ଅସାମାନ୍ୟା ନାରୀ ସହିତ ଜୀବନ ବାନ୍ଧି ପାରିଲେ ହୁଏତ ମୁଁ ନୂତନ ଭାବରେ କାର୍ଯ୍ୟରେ ଉଦ୍ଦୀପନା ପାଆନ୍ତି । ପୁଣି ଜବାବ ଦେଲି— କିନ୍ତୁ ମୋ ପରି ଝିଅ ପ୍ରେମ ଛଡ଼ା ବିବାହ କଳ୍ପନା କରି ନ ପାରେ । ଆସନ୍ତା ବର୍ଷ ମୁଁ ତିରିଶରେ ପାଦ ଦେବି ।

ନିଜ କଥାରେ ନିଜେ ଚମକି ପଡ଼ିଲି । ତିରିଶ ବର୍ଷ ପର୍ଯ୍ୟନ୍ତ ନାରୀର ଦେହରେ କୁମାରୀ ସୁଲଭ କୋମଳତା ଥାଏ, ମାତ୍ର ତିରିଶ ପରେ ନାରୀର ଦେହ ନିଃସ୍ୱ ଓ ରିକ୍ତ ହୁଏ—ବହୁ ଦିନ ତଳେ ଖଣ୍ଡିଏ ଫରାସୀ ଉପନ୍ୟାସରେ ପଢ଼ିଥିବା ଏହି କଥାଟି ମନେ ପଡ଼ିବାରୁ, ମୋତେ ଭୀଷଣ ଅବସାଦ ଗ୍ରାସ କଲା । ତଥାପି ମନକୁ ମନ ପଚାରିଲି—ପ୍ରୌଢ଼ା ବୟସ୍କା କଅଣ ନାରୀର ଜୀବନ ନୁହେଁ ? ମନେ ପଡ଼ିଲା, ଜଣେ ଶିକ୍ଷୟିତ୍ରୀ ଥରେ ସାବଧାନ କରି ଦେଇଥିଲେ ତିରିଶ ଟପିଲେ ଯାଇ ପ୍ରେମ କର ।

ପ୍ରାୟ ଦୁଇ ବର୍ଷ ତଳେ ଆପଣଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ସେତେବେଳେ ମୁଁ ଆପଣଙ୍କୁ ମୋ ଭାଇର ଗୁରୁ ହିସାବରେ ଜାଣିଥିଲି । ଏକା ସାଙ୍ଗରେ ଆମେ ମଦ ପାନ କରିଥିଲେ । ମୋର ଆପଣଙ୍କୁ ଟିକିଏ ବେପରୁଆ ମନେ ହୋଇଥିଲା । ମୋତେ ଆପଣ ଭଲ କି ମନ୍ଦ ଲାଗିଲେ ନାହିଁ । କିନ୍ତୁ ଗଲା ଛଅ ବର୍ଷ ଭିତରେ ଆପଣଙ୍କ ସ୍ମୃତି ମୋ ମନକୁ କୁହୁଡ଼ି ପରି ଘେରି ରହିଛି । ସେହି ରାତିରେ ସିଡ଼ିରେ ଓହ୍ଲାଇ ଆସିଲା ବେଳେ ଯେଉଁ ଘଟଣା ଘଟିଥିଲା, ତାହା ଏବେ ବି ସ୍ପଷ୍ଟ ମୋ ଆଖି ଆଗରେ ଭାସୁଛି । ଆପଣଙ୍କର ଅଭାବ ସବୁବେଳେ ଅନୁଭବ କରେ । ହୁଏତ ଏହାକୁ ପ୍ରେମ କହନ୍ତି । ଦୁନିଆରେ ସବୁ ପୁରୁଷଙ୍କ ଠାରୁ ଆପଣ ଭିନ୍ନ । ମୁଁ ଆପଣଙ୍କ ଠାରୁ ସନ୍ତାନ ଚାହେଁ ।

ହୁଏତ ଅନେକ ଦିନ ଆଗରୁ ଆମର ଦେଖା ହୋଇଥିଲେ, ଆମର ବିବାହ ହୋଇ ପାରି ଥାଆନ୍ତା ଏବଂ ମୁଁ ଆଜିକାର ଯନ୍ତ୍ରଣାର ହାତରୁ ମୁକ୍ତି ପାଇ ଥାଆନ୍ତି । କିନ୍ତୁ ଆପଣଙ୍କ ସହିତ କଦାପି ବିବାହ ହେବ ନାହିଁ, ଏହା ମୁଁ ମାନି ନେଇଛି । ଆପଣଙ୍କ ସ୍ତ୍ରୀର

ସ୍ଥାନ ଅଧିକାର କରିବାର ଚିନ୍ତା ହେଉଛି ବର୍ବରତା । ମୁଁ ଆପଣଙ୍କର ରକ୍ଷିତା ହେବାକୁ ରାଜି ।

ଏକମାତ୍ର ସମସ୍ୟା ଆପଣଙ୍କର ଜବାବ ସମ୍ବନ୍ଧରେ । ଏକ୍ଷଣି ମୋର ମନେ ହେଉଛି, ଆପଣଙ୍କ ଜବାବ ନ ପାଇଲେ ମୋର ଆକୁଳତା ଭିତ୍ତିହୀନ ହୋଇ ଶୂନ୍ୟରେ ମିଳେଇଯିବ । ଅବଶିଷ୍ଟ ଅଭିଶପ୍ତ ଜୀବନ ନିଃସଙ୍ଗ ଭାବରେ କଟିବ । ଆପଣଙ୍କ ଠାରୁ ଜବାବ ନ ମିଳିଲେ ମୁଁ ଶେଷ ହୋଇଯିବି ।"

ପର ଚିଠି —

"ମିଷ୍ଟାର ଏମ୍. ସି. (ମୋର ଚେଖଭ) ସମୀପେଷୁ,

ଆଜି ଫେର୍ ବର୍ଷା ହେଲା । କୁହୁଡ଼ି ଓ ମେଘ ମିଶି ସବୁ ଝାପ୍‌ସା ହୋଇ ଯାଇଛି । ନିତି ଆପଣଙ୍କ ଜବାବର ଆଶାରେ ଥାଏଁ । ଘରୁ ବାହାରିବାକୁ ଭରସା ହୁଏ ନାହିଁ । କିନ୍ତୁ ଏ ଅବଧି କିଛି ଜବାବ ମିଳିଲା ନାହିଁ । କଅଣ ଭାବୁଛନ୍ତି ?

କିଛି ଦିନ ହେଲା ମାଆ ଝାଡ଼ର ବ୍ୟଥାରେ କଷ୍ଟ ପାଉଥିଲେ । କିନ୍ତୁ ନାଓଜର ସୌଖିନ ଚିକିତ୍ସାର କଲ୍ୟାଣରେ ବ୍ୟଥାଟା କମିଛି । ଆଜି ମାଆଙ୍କର ମିଜାଜ ଖୁବ୍ ଭଲ ଅଛି । ସେ ମୋତେ ପଚାରିଲେ— ନାଓଜର ଗୁରୁ ଜଣକ କେମିତିକା ?

ମୋ ଶରୀର ଭିତରେ ଗୋଟାଏ ଥଣ୍ଡା ସୁଅ ଅଜ୍ଞାନକ ବହିଗଲା । ଜବାବ ଦେଲି— ଠିକ୍ କରି କହି ପାରିବି ନାହିଁ । ତେବେ ଭଦ୍ରଲୋକଙ୍କ ଦେହରେ ସତେ ଯେମିତି 'ଅନାଗ୍ରହ' ଲେଖା ହୋଇଥିବା ତକମାଟାଏ ଝୁଲୁଛି ।

ମାଆଙ୍କ ଆଖିରେ କୌତୁକର ଛାଇ ଖେଳିଗଲା— ଭାରି ମଜା କଥା ତ । ଯଦି ତକମା ରହିଲା, ତାହା ହେଲେ ତ ସେ ନିର୍ଦ୍ଦୋଷ ।

ଏହା ଶୁଣି ମୋତେ ଖୁବ୍ ଭଲ ଲାଗିଲା । ଭାରି ଖୁସି ହେଲି ।

ଆପଣ କଅଣ କେବେ ଏଠାକୁ ଆସିବେ ନାହିଁ ? ଆପଣଙ୍କୁ ନେଇ ଆସିବା ପାଇଁ ମୁଁ ନାଓଜକୁ କହି ଥାଆନ୍ତି । କିନ୍ତୁ ତାହା ଅସ୍ୱାଭାବିକ ଓ ଅଦ୍ଭୁତ ମନେ ହେବ । ନାଓଜ ଟୋକିଓରେ ଥିଲାବେଳେ ଆପଣ ଏକା ଚାଲି ଆସିଲେ ଭଲ ହୁଅନ୍ତା । ବଂଶାନୁକ୍ରମେ ଆମ ପରିବାରରେ ଶିଳ୍ପୀ-ପ୍ରୀତି ବର୍ତ୍ତମାନ । କିଓଟୋରେ ଆମ ଘରେ ବହୁ ବର୍ଷ ରହି ଚିତ୍ରକର କୁବିନ ଗୁଡ଼ାଏ ସୁନ୍ଦର ଛବି ଆଙ୍କିଥିଲେ । ସୁତରାଂ ଆପଣ ଆସିଲେ ମାଆ ଖୁବ୍ ଖୁସି ହେବେ ।

ଅନାଗ୍ରହୀ ଲୋକଙ୍କୁ ମୁଁ ଭଲ ପାଏ, ବିଶେଷତଃ ଯାହାର ନାମ ସହିତ କଳଙ୍କ ଜଡ଼ିତ ଅଛି । ମୁଁ ନିଜେ ବି ଅନାଗ୍ରହୀ ହେବାକୁ ଚାହେଁ । ମୋର ବିଶ୍ୱାସ, ଏହା ଛଡ଼ା ବଞ୍ଚିବାର ଆଉ କିଛି ରାହା ମୋର ନାହିଁ । ସାରା ଜାପାନରେ ଆପଣ ଲମ୍ପଟ୍ୟର ଉଦାହରଣ ସ୍ୱରୂପ ବୋଲି ଶୁଣିଲା ଠାରୁ ଆପଣଙ୍କ ପ୍ରତି ମୋର ଆକର୍ଷଣ ଦୁଇଗୁଣ ବଢ଼ି ଯାଇଛି । ଏବଠୁଁ ଆପଣ ଖାଲି ମୋତେ ଭଲ ପାଇବେ । ମୋ ସାଙ୍ଗରେ ରହିଲେ ଆପଣ କାମରେ ବି ନୂତନ ସ୍ୱାଦ ପାଇବେ । ଶୈଶବରୁ ଅନେକଙ୍କ ଭୁଣ୍ଡରୁ ଶୁଣିଛି, ମୋର ସଙ୍ଗ ସୁଖ ମଣିଷକୁ ଦୁଃଖ ଭୁଲାଇ ଦିଏ । ଜୀବନରେ କେହି କେବେ ମୋତେ ଅପସନ୍ଦ କରି ନାହିଁ । ଏଇଥି ପାଇଁ ମନେ ହେଉଛି, ମୋତେ ଅପସନ୍ଦ କରିବାର ସାଧ୍ୟ ଆପଣଙ୍କର ମଧ୍ୟ ନାହିଁ ।

ଥରେ ଆପଣଙ୍କର ଦେଖା ମିଳିଲେ ଭଲ ହୁଅନ୍ତା । ତାହା ହେଲେ ମୋ ଚିଠିର ଜବାବର କିଛି ପ୍ରୟୋଜନ ନାହିଁ । ସବୁ ଠାରୁ ଭଲ ହୁଅନ୍ତା, ଯଦି ଆପଣଙ୍କ ଟୋକିଓର ବସାକୁ ଯାଇ ଦେଖା କରି ପାରନ୍ତି । କିନ୍ତୁ ମାଆଙ୍କୁ ଏକା ଛାଡ଼ି ଦେଇ ଯିବା ମୋ ପକ୍ଷରେ ସମ୍ଭବ ନୁହେଁ । ଆପଣଙ୍କ ଗୋଡ଼ ତଳେ ପଡ଼ୁଛି, ଥରେ ମାତ୍ର ଏଠାକୁ ଆସନ୍ତୁ । ସେତେବେଳେ ଆପଣ ମୋର ସବୁ କଥା ବୁଝି ପାରିବେ ।

ପ୍ରଥମ ଚିଠିରେ ମୋ ହୃଦୟରେ ଏକ ବିଚିତ୍ର ଇନ୍ଦ୍ରଧନୁର କଥା ଲେଖିଥିଲି । ସେହି ଇନ୍ଦ୍ରଧନୁ ଅଗ୍ନିଶିଖାରେ ରଚିତ । ଏହି ଅନୁଭୂତି ଏତେ ତୀବ୍ର ଯେ ତାହା ମୋ ହୃଦୟକୁ ଅହରହ ଦଗ୍ଧ କରୁଛି । କିନ୍ତୁ ମଝିରେ ମଝିରେ ନିଜ ମନର ତାଡ଼ନାରେ ମୁଁ ଚମକି ପଡ଼େ, ଏ ମୁଁ କି ଅସମ୍ଭବ ନିର୍ବୋଧ ପରି କାମ କରିବାକୁ ଯାଉଛି । ପ୍ରାୟ ଅବାକ ହୋଇ ଭାବିବେ, ହୁଏତ ମୁଁ ପାଗଳ ହୋଇ ଯାଇଛି ।

ଥରେ ଆସି ମୋତେ ଦେଖି ଯାଆନ୍ତୁ । ତା ପରେ ଅପସନ୍ଦ ହେଲେ ମୋତେ ସ୍ୱଚ୍ଛନ୍ଦରେ ଜଣାଇ ପାରିବେ । ଆପଣଙ୍କ ହାତରେ ପ୍ରଜ୍ୱଳିତ ମୋ ଅନ୍ତରର ଏହି ବହ୍ନିଶିଖାକୁ ଆପଣ ସ୍ୱେଚ୍ଛାରେ ନିଭାଇ ଦେଇ ପାରିବେ । ନିଃସଙ୍ଗ ପ୍ରଚେଷ୍ଟାରେ ତାହା ନିର୍ବାପିତ କରିବା ଅସମ୍ଭବ । ମୁଁ ଜାଣେ, ଖାଲି ଥରେ ଆମର ସାକ୍ଷାତ ହେଲେ ମୁଁ ବଞ୍ଚି ଯିବି । ହାୟ ! ଯଦି ସେହି 'ଗୋଞ୍ଜିର ଉପାଖ୍ୟାନ'ର ଦିନ ଗୁଡ଼ିକ ଫେରି ଆସନ୍ତା, ତାହା ହେଲେ ମୋର ଏକ୍ଷଣି ଫେରିବା ମୋଟେ ଅସମ୍ଭବ ଶୁଭନ୍ତା ନାହିଁ ।

ମୋର ବିଶ୍ୱାସ, ଦୁନିଆ ଯେଉଁମାନଙ୍କୁ ଭଲ ବୋଲି କହେ ସେମାନେ ସମସ୍ତେ ମିଥ୍ୟାବାଦୀ ଓ ଭଣ୍ଡ । ଦୁନିଆ ଉପରେ ମୋର ଆଦୌ ଆସ୍ଥା ନାହିଁ । ମୋର ଏକମାତ୍ର ବନ୍ଧୁ ହେଉଛି ଜଣେ ପରିଚିତ ତିକମାଧାରୀ ବ୍ୟଭିଚାରୀ ପୁରୁଷ । ଏକମାତ୍ର ସେହି ଜଣକ ଉପରେ ମୁଁ ଆତ୍ମ-ବିସର୍ଜନ କରିବାକୁ ପ୍ରସ୍ତୁତ । ଲୋକେ ମୋତେ ଯେତେ ସମାଲୋଚନା କଲେ ସୁଦ୍ଧା ମୁଁ ସେମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରୁଛି—ପାପର ସ୍ୱରୂପକୁ ଲୁଚାଇ ରଖିବା ଅଧିକ ମାରାତ୍ମକ ନୁହେଁ କି ?

ମୋର ଏକମାତ୍ର ବକ୍ତବ୍ୟ, ମୁଁ ଆପଣଙ୍କ ପଥ ଚାହିଁ ରହିଲି । ଜୀବନରେ ମାତ୍ର ଏକ ଭାଗ ସମୟ ସୁଖ, ଦୁଃଖ, କ୍ରୋଧ, ଇତ୍ୟାଦି ଆବେଗରେ କଟେ ବାକି ଅନେଶତ ଭାଗ ଆଶାରେହିଁ କଟେ ।

ସେହି ପରମ ମୁହୂର୍ତ୍ତର ଅପେକ୍ଷାରେ ବସିଛି । ପ୍ରତ୍ୟହ ସକାଳୁ ରାତି ଅବଧି ଆପଣଙ୍କ ପଥ ଚାହିଁ ଚାହିଁ ନୟନ ଶ୍ରାନ୍ତ ହୁଏ ।

ଆପଣ କଅଣ ମାତାର ଅନୁଶାସନକୁ ଛାଡ ପାରିବେ ନାହିଁ ?

୪

ଏହି ଗ୍ରୀଷ୍ମ ଋତୁରେ ମୁଁ ତାହାଙ୍କୁ ତିନ ଖଣ୍ଡ ଚିଠି ଦେଇଛି, କିନ୍ତୁ ବହୁ କାଳ ଅପେକ୍ଷା କରି କିଛି ଜବାବ ପାଇଲି ନାହିଁ । ଥରେ କଥା କଥାରେ ନାଓଜିକୁ ପଚାରିଲି, ଭଦ୍ରଲୋକ କେମିତି ଅଛନ୍ତି । ନାଓଜି ଜବାବ ଦେଲା— ବରାବର ଯେମିତି ଥାଆନ୍ତି ସେମିତି ଅଛନ୍ତି, ନିତି ରାତିରେ ମଦ ଓ ଆନୁଷଙ୍ଗିକ ହୈଚୈ, ଲେଖୁଛନ୍ତି ଅଧିକ ଅଶ୍ଳୀଳ ଲେଖା, ସଭ୍ୟ ସମାଜ ଛି ଛି କରୁଛି । ସେ ନାଓଜିକୁ ପୁସ୍ତକ-ପ୍ରକାଶନରେ ହାତ ଦେବାକୁ କହିଛନ୍ତି । ସେ ବି ଏହି ପ୍ରସ୍ତାବକୁ ମହା ଉତ୍ସାହରେ ଗ୍ରହଣ କରିଛି । ନାଓଜିର କଥା ଶୁଣି ପରିଷ୍କାର ବୁଝି ପାରିଲି ଯେ ମୋ ମନର କାଣିଚାଏ ହେଲେ ସୁରଭି ପାରିପାର୍ଶ୍ୱିକତା ଭେଦି ମୋ ମନର ମଣିଷ ଠାରେ ପହଞ୍ଚି ପାରି ନାହିଁ । ଏଥିରୁ ବୁଝି ପାରିଲି ଯେ ବାସ୍ତବ ଜଗତ ସହିତ ମୋ କଳ୍ପନାର ବହୁତ ତଫାତ । ଏକ ଅନନୁଭୂତ ନିଃସଙ୍ଗତା ମୋତେ ଗ୍ରାସ କଲା । ମନେ ହେଲା, ହେମନ୍ତର କେଉଁ ସନ୍ଧ୍ୟାରେ ଏକ ପତିତ ପ୍ରାନ୍ତରରେ ମୁଁ ପରିତ୍ୟକ୍ତା । ନିଜକୁ ପଚାରିଲି, ସୂର୍ଯ୍ୟ ଦୃଷ୍ଟିର ସମ୍ପୂର୍ଣ୍ଣ ଅନ୍ତରାଳକୁ ଚାଲିଯିବା ପରେ ଏକାକୀ ବିଜନ ପ୍ରାନ୍ତରରେ ନିଷ୍ଠୁର ଶୀତାଘାତରେ ମରଣ କଅଣ ମୋର ନିୟତି ? ମୋର କାନ୍ଧ ଓ ଛାତି ଥରିଲା, ଚାପା କାନ୍ଦଣାରେ ଦମ ବନ୍ଦ ହୋଇ ଆସିଲା । ଆଉ ଅପେକ୍ଷା କରି ପାରିଲି ନାହିଁ ।

ଦିନେ ରାତିରେ ମାଆ ଖୁବ୍ ଖୁବ୍ କାଶିବାକୁ ଲାଗିଲେ । ଦେଖିଲି, ଦେହର ଉତ୍ତାପ ଶହେ ଦୁଇ ଡିଗ୍ରୀ । ପର ଦିନ ଡାକ୍ତର ଆସି ମାଆଙ୍କୁ ପରୀକ୍ଷା କରି ମୋତେ କହିଲେ— "ଭୟର କିଛି କାରଣ ନାହିଁ । ମୋ ବ୍ୟବସ୍ଥାପତ୍ର ଅନୁଯାୟୀ ଔଷଧ ଖାଇଲେ ଭଲ ହୋଇ ଯିବେ ।"

କିନ୍ତୁ ସପ୍ତାହେ ଗଲା, ମାଆଙ୍କୁ ଜର ଛାଡ଼ିଲା ନାହିଁ । ନାଓଜି ଦଶ ଦିନ ହେଲା ଟୋକିଓକୁ ଯାଇଛି । ହଡ଼ବଡ଼େଇ ଯାଇ ମାମୁଁଙ୍କ ଠାକୁ ଖବର ଦେଲି । ମନ ଦେଇ ମାଆଙ୍କର ଛାତି ପରୀକ୍ଷା କରି ଡ଼ାକ୍ତର ହଠାତ୍ ଚିତ୍କାର କଲେ—"ଏଥର ଠିକ୍ ଧରା ପଡ଼ିଲା । ବାମ ଫୁସ୍‌ଫୁସ୍‌ରେ ଜଖମ ହୋଇଛି । ମାତ୍ର ଉଦ୍‌ବେଗର କାରଣ ନାହିଁ । ଜର କିଛି ଦିନ ରହିବ । ଯଦି ତୁମ ମାଆ ଚୁପଚାପ ଶୋଇ ରହନ୍ତି, ତାହା ହେଲେ ଭୟର କିଛି କାରଣ ନ ଥିବ ।"

ଡାକ୍ତର ଚାଲିଗଲେ । ମୁଁ ଖୁସି ହୋଇ ମାଆଙ୍କୁ କହିଲି— "ମନକୁ ଟିକିଏ ଶକ୍ତ କଲେ ଶୀଘ୍ର ଭଲ ହୋଇଯିବ । ଏଥର ଗରମ କାଳର ଆବହାଓ୍ୟାଟା ଏକାବେଳେ ଅସ୍ୱାଭାବିକ ।"

ଆଖି ବୁଜି ମାଆ ହସିଲେ—"ଲୋକେ କହନ୍ତି, ଯେଉଁମାନେ ଗ୍ରୀଷ୍ମର ଫୁଲକୁ ଭଲ ପାଆନ୍ତି ସେମାନେ ଗରମ ଦିନରେ ମରନ୍ତି । ମୁଁ ଏହି ଗ୍ରୀଷ୍ମରେ ଶେଷ ନିଃଶ୍ୱାସ ତ୍ୟାଗ କରିବି ବୋଲି ଭାବିଥିଲି । କିନ୍ତୁ ନାଓଜି ଘରକୁ ଫେରି ଆସିଛି ବୋଲି ବୋଧ ହୁଏ ଶରତ୍ କାଳ ପର୍ଯ୍ୟନ୍ତ ରହିଯିବି ।"

ନାଓଜି ପରି ଏମିତି ଅପଦାର୍ଥ ଆଜି ମାଆଙ୍କର ନୟନ ମଣି ହେଲା ଭାବି ମୁଁ ଅନ୍ତରରେ ବ୍ୟଥା ପାଇଲି ।

ପ୍ରାୟ ଏକ ସପ୍ତାହ ପରେ ମାମୁଁ ଟୋକିଓରୁ ଜଣେ ପ୍ରବୀଣ ଡାକ୍ତରଙ୍କୁ ନେଇ ଆସିଲେ । ଡାକ୍ତର ମିୟାକେ ବାବାଙ୍କର ପରିଚିତ ।

ମାଆ ତାହାଙ୍କୁ ଦେଖି ଖୁସି ହେଲେ । ତାଙ୍କର ଅମାର୍ଜିତ ବ୍ୟବହାର ଓ ରୁକ୍ଷ ଭାଷା ମାଆଙ୍କ ମନ ତରଳାଇ ଦେଲା । ମୁଁ ହାଣ୍ଡିଶାଳରୁ ଆସି ଡାକ୍ତରଙ୍କୁ ପଚାରିଲି—"ମାଆଙ୍କୁ ଦେଖିଲେ ତ ? କଅଣ କହୁଛନ୍ତି ?"

ଡାକ୍ତର ନିର୍ବିକାର ମୁଖରେ ଜବାବ ଦେଲେ—"ତୁମ ମାଆର କିଛି ହୋଇ ନାହିଁ ।"

"ବଞ୍ଚିଲି !"

ତା ପରେ ଡାକ୍ତର ମିସ୍ଙ୍କ ଚୀନା-ଘର ଆଡ଼କୁ ଚାଲିଗଲେ । ମୁଁ ତାହାଙ୍କୁ ଅନୁସରଣ କଲି । ପରଦା କଡ଼ରେ ସେ ରହି ଯାଇ କହିଲେ—"ଛାତିରେ ଗୋଟାଏ ଅଦ୍ଭୁତ ଶବ୍ଦ ହେଉଛି । ଉଭୟ ଫୁସଫୁସକୁ ମାଡ଼ି ଗଲାଣି ।"

"ଯଦି ମାଆଙ୍କୁ ପ୍ରଚୁର ପରିମାଣରେ ଅଣ୍ଡା, ଦୁଧ, ଲହୁଣୀ, ଫଳ ଖାଇବାକୁ ଦିଆଯାଏ, ସେ ଭଲ ହୋଇ ଯିବେ ତ ?"

"ଖାଇବାକୁ ଦିଅ । କିନ୍ତୁ ଏଟା ମାରାତ୍ମକ ରୋଗ । ତୁମର ଆଗରୁ ହୁସିଆର ହେବା ଦରକାର ।"

କମ୍ପିତ କଣ୍ଠରେ ପଚାରିଲି—"କେତେ ଦିନ ଲାଗିବ ? ଦୁଇ ବର୍ଷ ? ତିନି ବର୍ଷ ?"

"କିଛି ହେବ ନାହିଁ । ମୋଟ ଉପରେ କୌଣସି ଉପାୟ ନାହିଁ । ନାଗଓସ୍କା ଉଷ୍ଣ ପ୍ରସ୍ରବଣକୁ ପଠାଇବାର ବ୍ୟବସ୍ଥା କର ।"

ଡାକ୍ତରଙ୍କୁ ଫାଟକ ପାଖରେ ଛାଡ଼ି ଦେଇ ଫେରି ଆସି ମାଆଙ୍କ ବିଛଣା ପାଖରେ ଛିଡ଼ା ହେଲି । ମାଆ ପଚାରିଲେ—"ଡାକ୍ତର ବାବୁ କଅଣ କହିଲେ ?"

"ଜର ଛାଡ଼ିଗଲେ ସବୁ ଠିକ୍ ହୋଇଯିବ ।"

ନିଜ ଭିତରେ କଥାଗୁଡ଼ାକ ବିଶ୍ୱାସ କରିବାକୁ ଚେଷ୍ଟାକଲି । ସ୍ଥିର କଲି, ଏବେଠୁଁ ମାଆଙ୍କ ଲାଗି ସବୁ ରକମ ସୁସ୍ୱାଦୁ ଖାଦ୍ୟ ତିଆରି କରିବାହିଁ ହେବ ମୋର ଏକମାତ୍ର ସାଧନା । ସେଥିପାଇଁ ମୋର ଯାହା କିଛି ଅଛି ସବୁ ବଳି ଦେବି । ମାଆଙ୍କ ମୁଖରେ ଅସୁସ୍ଥତାର ଛିଟେ ମାତ୍ର ଲକ୍ଷଣ ନାହିଁ । ଆଖି ଦୁଇଟି ଉଜ୍ଜ୍ୱଳ, ଦେହ ସତେଜ ଓ ମସୃଣ । ଠିକ୍ ଦ୍ୱିପହର ପରେ ଜର ଆସେ । ମନରୁ ଡାକ୍ତରଙ୍କ କଥା ପୁରାପୁରି ପୋଛି ଦେଲି ।

ଗୋଧୂଳିରେ ଶେଷ ଆଲୁଅ ଅନ୍ଧକାରମୟ ବାରନ୍ଦାକୁ ଓହ୍ଲାଇ ଆସିଛି । ବର୍ଷା ହେଉଛି । ମାଆଙ୍କ ରୂପ ଦେଖି ମୁଗ୍ଧ ହେଲି । ସେ ବଞ୍ଚିଥିବାରୁ କୃତଜ୍ଞତାରେ ମୋର ଆଖି ଛଳ ଛଳ ହେଲା । ପଚାରିଲି—"ରାତିରେ କଅଣ ଖାଇବ ?"

"ଆଜି କିଛି ଖାଇବି ନାହିଁ । ଜର ଶହେ ତିନି ଡିଗ୍ରୀକୁ ଉଠିଥିଲା ।"

ବାହାରେ ଅନ୍ଧାର । ପବନ ବହୁଛି । ଆଲୁଅ ଜାଳିଲି । ମାଆ କହିଲେ—"ଆଲୁଅଟା ବଡ଼ କଡ଼ା, ଲିଭାଇ ଦେ । ଅନ୍ଧାରରେ ଶୋଇଲେ ମୋତେ ଆଦୌ ଏକା ମନେ ହୁଏ ନା । ଆଲୁଅର ତେଜ ମୋତେ ସହି ପାରୁ ନାହିଁ । ଏଣିକି ଏ ଘରେ ଆଉ ଆଲୁଅ ଜଳାନା ।"

ଆଲୁଅ ଲିଭାଇ ଦେଲି । ଏକା ଥିବାରୁ ଅସହ୍ୟ ମନେ ହେଲା । ହାଣ୍ଡିଶାଳକୁ ଗଲି । ଥଣ୍ଡା ଭାତ ସାଙ୍ଗରେ ଟିଣର ସାଲମନ ମାଛ ଖାଇ ବସି ମୋ ଆଖିରୁ ଥପ ଥପ ହୋଇ ଲୁହ ଗଡ଼ି ପଡ଼ିଲା ।

ରାତି ବଢ଼ିବା ସଙ୍ଗେ ସଙ୍ଗେ ପ୍ରଚଣ୍ଡ ଝଡ଼ ଓ ମୂଷଳ ଧାରରେ ବର୍ଷା ହେଲା । ଗୋଟାଏ ଅଦ୍ଭୁତ ଉତ୍ତେଜନା ନେଇ ମାଆଙ୍କ ପାଖ ଘରେ ଜେର୍ଜା ଲୁକ୍‌ସେମବାର୍ଗଙ୍କ 'ଅର୍ଥନୀତିର ଭୂମିକା' ବହିଟି

ପଢ଼ିବାକୁ ବସିଲି । ବହିଟି ମୋ ମନରେ ଯଥେଷ୍ଟ କୌତୂହଳ ଉଦ୍ରେକ କଲା । ବାର ବର୍ଷ ତଳେ ପଢ଼ିଥିବା "ସାଗଶିନା ଦିନ ଲିପି"ର ଅବସ୍ଥା ଟପି ମୁଁ ଏକ ପାହୁଣ୍ଡ ସୁଦ୍ଧା ଅଗ୍ରସର ହୋଇ ନାହିଁ । ସାଧାରଣ ସତ୍ୟ ହିସାବରେ ମୁଁ ବିଶ୍ୱାସ କରେଁ ଯେ ପ୍ରେମ ଓ ବିଦ୍ରୋହ ସକାଶେହିଁ ମଣିଷର ଜନ୍ମ ।

ଅକ୍ଟୋବର ଆସିଲା । କିନ୍ତୁ ଆକାଶ ଓ ପବନରେ ଶରତର ରଙ୍ଗ ଲାଗିଲା ନାହିଁ । ବରଂ ବର୍ଷା ଋତୁ ପରି ଗୋଟାକ ପରେ ଗୋଟାଏ ଗରମ ସନ୍ତସନ୍ତିଆ ଦିନ ଗଡ଼ି ଯିବାକୁ ଲାଗିଲା । ନିତି ସନ୍ଧ୍ୟାରେ ମାଆଙ୍କର ଜର ଶହେ ଉପରେ ରହିଲା ।

ଦିନେ ସକାଳେ ହଠାତ୍ ମାଆଙ୍କ ଡାହାଣ ହାତ ଫୁଲିଥିବାର ଦେଖି ହଡ଼ବଡ଼େଇ ଗଲି । ଏବେ ସେ ସକାଳର ଖାଦ୍ୟଟା ନାମକୁ ମାତ୍ର ମୁଖରେ ଦିଅନ୍ତି । ସେ ଦିନର ଝୋଲଟା ମୁଖ ପାଖକୁ ନେଇ ନ ଚାଖି ସେ ଟ୍ରେରେ ପୁଣି ରଖି ଦେଲେ ।

ପଚାରିଲି—"ମାଆ, ତୁମ ହାତରେ ଏ କଅଣ ହେଲା ?"

"କିଛି ନୁହେଁ । ଟିକିଏ ଫୁଲିଛି ।"

ତାଙ୍କର ମୁଖରେ ଗୋଟାଏ ଆଛନ୍ନ ଭାବ ଫୁଟିଲା । ମୋର କ୍ରୋଧ ଉଠିଲା । ବୁଝି ପାରିଲି, ଆଖିର ଲୁହ ରୋକି ପାରିବି ନାହିଁ । ଅସହ୍ୟ ବୋଧ ହେବାରୁ ହଠାତ୍ ହାଣ୍ଡିଶାଳକୁ ଚାଲିଗଲି । ସେଠାରେ ବସି ନାଓଜ ଗୋଟାଏ ନରମ ସିଝା ଅଣ୍ଡା ଖାଉଥିଲା ।

ତଳକୁ ମୁହଁ ପୋତି କହିଲି—"ମାଆଙ୍କର ଡାହାଣ ହାତ ଫୁଲିଛି ।" ଆଉ କିଛି କହି ପାରିଲି ନାହିଁ, ଦେହଟା ଥରିଲା ।

ନାଓଜ କିଛି ଜବାବ ଦେଲା ନାହିଁ ।

ମୁଖ ଟେକି ପୁଣି ତାହାକୁ ଜଣାଇଲି—"ଆଉ ଆଶା ନାହିଁ ।" ଟେବୁଲକୁ ଜୋରରେ ଧରି ଠିଆ ହୋଇଥିଲି । "ଯେ କୌଣସି ମତେ ମାଆଙ୍କୁ ବଞ୍ଚାଇବାକୁ ହେବ ।"

ହଠାତ୍ ନାଓଜ କାନ୍ଦଣାରେ ଭାଙ୍ଗି ପଡ଼ିଲା—"ଦେଖି ପାରୁ ନାହିଁ, ମାଆ ଏକଷଣି ଆମ ହାତର ବାହାରେ ! ଆମର କିଛି କରିବାର ସାଧ ନାହିଁ ।"

ମାମୁଁଙ୍କ ସହିତ ପରାମର୍ଶ କରିବା ଲାଗି ନାଓଜ ସେ ଦିନ ଟୋକିଓକୁ ଚାଲିଗଲା । ଦିନ ସାକ ମୁଁ ଖାଲି କାନ୍ଦି କାନ୍ଦି କଟାଇଛି । ମାଆଙ୍କ ସହିତ ଜଡ଼ିତ ନାନା ରକମ ଘଟଣା ସବୁ ଆଖି ସାମନାରେ ଛବି ପରି ଭାସି ଯାଉଥିଲା ।

ପର ଦିନ ମାଆଙ୍କ ହାତରେ ଫୁଲା ଆହୁରି ବଢ଼ିଗଲା । ସେ କିଛି ଖାଇଲେ ନାହିଁ, ଏପରିକି କମଳାର ରସ ସୁଦ୍ଧା ଢୋକି ପାରିଲେ ନାହିଁ ।

ଦିପହରେ ନାଓଜ ସାଙ୍ଗରେ ଡାକ୍ତର ମିୟାକି ଓ ଜଣେ ସେବିକାକୁ ନେଇ ଫେରି ଆସିଲା । ଡାକ୍ତର ମାଆଙ୍କୁ ପରୀକ୍ଷା କରି ଗୋଟାଏ ଇଞ୍ଜେକସନ ଦେଇ କହିଲେ—"ଖୁବ୍ କାହିଲ ହୋଇ ପଡ଼ିଛନ୍ତି ।" ହାତ ଠାରି ସେ ନାଜଓକୁ ଡାକି କଅଣ କହିଲେ ।

ରୋଗୀର ଘରୁ ବାହାରି ଆସିଲାରୁ, ଦେଖିଲି, ନାଓଜ କାନ୍ଦ ଚାପିବା ପାଇଁ ପ୍ରାଣ ପଣେ ଚେଷ୍ଟା କରୁଛି । ବିକୃତ ହସରେ ତାହାର ଓଠ ଥରିଲା । ମୁଁ ପଚାରିବାରୁ ସେ ଜଣାଇଲା—"ଡାକ୍ତର ବାବୁଙ୍କ ମତରେ, ବେଶୀ ହେଲେ ଆଉ ଦିନେ କି ଦୁଇ ଦିନ ।" ତାହାର ଆଖିରେ ଲୁହ ଭରିଗଲା ।

କହିଲି "ବୋଧ ହୁଏ ସମସ୍ତଙ୍କୁ ଖବର ଦେବା ଦରକାର ।"

"ମାମୁଁଙ୍କ ସାଙ୍ଗରେ କଥା ହେଲି । ସେ କହିଲେ, ବର୍ତ୍ତମାନ

ଅବସ୍ଥାରେ ଆମ ପକ୍ଷରେ ଏତେ ବଡ଼ ଆୟୋଜନ କରିବା ସମ୍ଭବ ନୁହେଁ । କାରଣ ଆତ୍ମୀୟ ସ୍ୱଜନ ସମସ୍ତେ ଆସି ପହଞ୍ଚିଲେ ରହିବାକୁ ଆମ ଘରେ ଥାନ ନାହିଁ । ତାହା ଛଡ଼ା ନିକଟରେ କୌଣସି ଭଲ ହୋଟେଲ ବି ନାହିଁ । ସେ ନିଜେ ଆସିବେ ସତ, ମାତ୍ର ସେ ଏତେ କୃପଣ ଯେ ତାହାଙ୍କ ଠାରୁ କିଛି ସାହାଯ୍ୟ ଆଶା କରିବା ବୃଥା ।''

"ଯାହା ହେଲେ ସୁଦ୍ଧା, ତୋତେ ତ ତାଙ୍କରି ଉପରେ ଭରସା କରିବାକୁ ହେବ ।'

"କଦାପି ନୁହେଁ । ବରଂ ଭିକ ମାଗି ଖାଇବି । ତୋତେ ବରଂ ତାଙ୍କର ମୁଖ ଚାହିଁ ରହିବାକୁ ପଡ଼ିବ ।''

ଆଖିରେ ଲୁହ ଭରିଗଲା—''ମୋର ଯିବାର ଜାଗା ଅଛି ।''

''ବିବାହ କରିବୁ ?''

"ନା ।''

"ଚାକିରି କରିବୁ ''

"ନା, ବିଦ୍ରୋହୀ ଦଳରେ ମିଶିବି ।''

ଠିକ୍ ସେତିକି ବେଳେ ସେବିକାର ଡ଼ାକ ଶୁଣି ମାଆଙ୍କ ପାଖକୁ ଧାଇଁ ଗଲି । ପଚାରିଲି— "ପାଣି ?''

ମାଆ ଆସ୍ତେ ମୁଣ୍ଡ ହଲାଇ ମନା କଲେ । କିଛି କ୍ଷଣ ପରେ ଅତି ମୃଦୁ ସ୍ୱରରେ କହିଲେ— "ସ୍ୱପ୍ନ ଦେଖିଲି ।''

"କି ସ୍ୱପ୍ନ ?''

"ସାପ । ମୋର ବିଶ୍ୱାସ, ଗାଡ଼ି-ବାରନ୍ଦା ସାମନାରେ ସିଡ଼ି ପାଖକୁ ଲାଲ ଡୋରିଆ ସାପୁଣୀଟା ଆସିଛି । ଦେଖ ତ ଯାଇ ।''

ଉଠି ପଡ଼ି ବାରନ୍ଦାକୁ ଯାଇ କାଚ ଝରକା ବାଟେ ବାହାରକୁ ଅନାଇଲି । ଗୋଟାଏ ସାପୁଣୀ ସିଡ଼ି ଉପରେ ନିଶ୍ଚିନ୍ତରେ ଦେହ ମେଲି ଦେଇ ଶରତର ଖରା ଉପଭୋଗ କରୁଥିଲା । ମୋ ମଥା ଝିମଝିମ ହେଲା । ପର ମୁହୂର୍ତ୍ତରେ ଅନାବଶ୍ୟକ ଜୋରରେ ତଳେ ପାଦ କଚାଡ଼ି ବଡ଼ ପାଟିରେ କହିଲି—"ନାଁ, ମାଆ, ଏଠି ତ କୌଣସି ସାପ ଦେଖୁ ନାହିଁ । ସେଟା ତୁମର ମିଥ୍ୟା ସ୍ୱପ୍ନ ।" ପୁଣି ସିଡ଼ି ଆଡ଼କୁ ଅନାଇଲି, ସାପଟା ଚାଲି ଯାଉଛି । ମାଆଙ୍କର ଆଶା ଏତାବେଳେ ଛାଡ଼ି ଦେଲି । ଜାଣେ, ବାବାଙ୍କ ମୃତ୍ୟୁ ସମୟରେ ଗୋଟାଏ କଳା ସାପ ବିଛଣା ପାଖରେ ଦେଖା ଯାଇଥିଲା ।

ପର ଦିନ ମାଆଙ୍କ ପାଖରେ ବୁଣା ସରଞ୍ଜାମ ଧରି ବରାବର ବସି ରହିଲି । ସକାଳଠୁଁ ସେ କିଛି ଖାଇଲେ ନାହିଁ । ଯାହା ହେଉ ତାଙ୍କର ସମ୍ପୂର୍ଣ୍ଣ ଜ୍ଞାନ ଥିଲା । ସେ ମଝିରେ ମଝିରେ ଶାନ୍ତ ଗଳାରେ କଥା କହୁଥିଲେ । ମ୍ଳାନ ହସି ସେ କହିଲେ—"ଆଜିକାଲି କାନ୍ଦିବାକୁ ଚାହିଁଲେ ବି ମୋତେ କାନ୍ଦ ମାଡୁ ନାହିଁ ।"

ଶରତର ଶାନ୍ତ ସକାଳ । ସୂର୍ଯ୍ୟାଲୋକର ସ୍ନିଗ୍ଧ ସ୍ପର୍ଶରେ ଉଦ୍ୟାନର ମନୋରମ ଶୋଭା । ବୁଣା ସରଞ୍ଜାମ ଥୋଇ ଦେଇ ଦୂରରେ ଉଜ୍ଜ୍ୱଳ ସମୁଦ୍ର ଆଡକୁ ଅନାଇ କହିଲି —"ମାଆ, ଏତେ ଦିନ ଯାଏ ମୁଁ ସଂସାର ବିଷୟ କିଛି ଜାଣି ନ ଥିଲି ।"

ମୃଦୁ ହସି ମାଆ ପଚାରିଲେ—"ଏକ୍ଷଣି କଅଣ ତୁ ସଂସାରକୁ ଚିହ୍ନିଲୁ ।"

ମୋ ମୁଖ ଲାଲ ପଡ଼ିଗଲା ।

ଅନ୍ୟ ଦିଗକୁ ମୁଖ ବୁଲାଇ ମାଆ କ୍ଷୀଣ କଣ୍ଠରେ କହିଲେ—"କିନ୍ତୁ ମୁଁ ଆଜି ଯାଏ ଚିହ୍ନି ନାହିଁ । ଆଉ କେହି ଚିହ୍ନିଛନ୍ତି କି

ନା ମୋତେ ଜଣା ନାହିଁ । ସମସ୍ତ ନିଜ ଅନୁସାରେ ଗଢ଼ି ଗୁଲେ । ଆମେ ସମସ୍ତେ ମିଳି ହୋଇ ରହୁ । ଆମେ କିଛି ବୁଝୁ ନା ।"

ହଠାତରେ ଷ୍ଟୋକଓରୁ ମାମୁଁ ଓ ମାଇଁ ଆସି ପହଞ୍ଚିଲେ । ମାମୁଁ ସିଧା ରୋଗୀର ଘରକୁ ଯାଇ ମାଆଙ୍କ ପାଖରେ ବସିଲେ । ମାଆ ରୁମାଲରେ ମୁଖର ତଳ ପଟଟା ଢ଼ାଙ୍କି ମାମୁଁଙ୍କ ଆଡକୁ ଅନାଇ କାନ୍ଦିବାକୁ ଲାଗିଲେ, କିନ୍ତୁ ଆଖିରୁ ଟୋପାଏ ଲୁହ ବାହାରିଲା ନାହିଁ ।

"ନାଓଜ କାହିଁ ?" କିଛି କ୍ଷଣ ପରେ ମାଆ ମୋତେ ପଚାରିଲେ ।

ମୁଁ ତତ୍‌କ୍ଷଣାତ୍ ବେଡ଼ାଗାଲକୁ ଯାଇ ନାଓଜକୁ ଡାକି ଆଣିଲି । ଆମେ ଭାଇ ଭଉଣୀ ଦୁହେଁ ମାଆଙ୍କ ବିଛଣା ପାଖରେ ଯାଇ ବସିଲୁ । ହଠାତ୍ ଗୁଦର ତଳୁ ହାତ କାଢ଼ି ଆଣି ମାଆ ମାରବରେ ପ୍ରଥମେ ନାଓଜ ଓ ପରେ ମୋ ଆଡ଼କୁ ନିର୍ଦ୍ଦେଶ ଦେଇ ଅନୁରୋଧର ଭଙ୍ଗୀରେ ହାତ ଯୋଡ଼ି ମାମୁଁଙ୍କୁ ଅନାଇଲେ ।

ମାମୁଁ ଉଦାର ଭାବରେ କାନ୍ଧ ହଲାଇ କହିଲେ—"ହଁ, ବୁଝିଲି, ବୁଝିଲି ।"

ମାଆ ଆଖି ବୁଜିଲେ । ମାମୁଁଙ୍କ କଥାରେ ନିଶ୍ଚିନ୍ତ ହେଲେ । ହାତ ଦୁଇଟି ପୁଣି ଗୁଦର ଭିତରକୁ ଟାଣି ନେଲେ ।

ମୁଁ କାନ୍ଦୁଥିଲି । ନାଓଜ ମୁହଁ ଟୋଡି ଧକାଉଥିଲା ।

ଭୋଜନ ସାରି ମାମୁଁ, ମାଇଁ ଓ ଡାକ୍ତର ଗାଡିରେ ଷ୍ଟୋକଓକୁ ଫେରିଗଲେ । ମାମୁଁ ମୋତେ କିଛି ଟଙ୍କା ଦେଇଗଲେ । ସମସ୍ତଙ୍କୁ ଫାଟକ ପର୍ଯ୍ୟନ୍ତ ବାଟେଇ ଦେଇ ମାଆଙ୍କ ପାଖକୁ ଫେରି ଆସିଲି । ସେ ଫୁସଫୁସ କରି ମୋତେ କହିଲେ—"ତୋ ଉପରେ ଖୁବ୍ ଝଡ଼ ବହି ଗୁଲିଛି ।"

ତା ପରେ ମାଆ ଆଉ କଥା କହିପାରିଲେ ନାହିଁ । ପ୍ରାୟ ତିନି ଘଣ୍ଟା ପରେ ସେ ଆମକୁ ଛାଡ଼ି ଚାଲିଗଲେ । ତାଙ୍କର ଓଠରେ ଈଷତ ହସ ଲାଗି ରହିଥିଲା, ଦେହରେ ଅଧିକ ଲାବଣ୍ୟ । ହଠାତ୍ ମୋତେ ମାଲୁମ ହେଲା, ସତେ ଯେମିତି ମୃତ ଯୀଶୁଙ୍କୁ କୋଳରେ ଧରି ବସିଥିବା ମେରୀଙ୍କ ସହିତ ଏହି ଦେହେଟିର ସାମଞ୍ଜସ୍ୟ ଅଛି ।

୭

ମାମୁଁ ଇକ୍‌ରେ ସମାଧି ଓ ଷ୍ଟୋକଓରେ ଅନୁଷ୍ଠାନାଦିର ବ୍ୟବସ୍ଥା କଲେ । ତା ପରେ ନାଓଜ ଓ ମୁଁ ଦୁହେଁ ଏକା ସାଙ୍ଗରେ ସଂସାର ଚଳାଇବାକୁ ଯାଇ ଏମିତି କଦର୍ଯ୍ୟ ପରିସ୍ଥିତି ଉପୁଜିଲା ଯେ ଆମେ ସାମନା ସାମ୍ନି ହେଲା କ୍ଷଣି କଥା କଟାକଟି ହେଲୁ । ମାଆଙ୍କର ସବୁ ଗହଣା ବିକି ନାଓଜ ପୁସ୍ତକ ପ୍ରକାଶନର ମୂଳଧନ ସଂଗ୍ରହ କଲା । ଷ୍ଟୋକଓରେ ନିଶାରେ ଚୂର୍ ହୋଇ ସେ ଯେତେ ବେଳେ ଟଳି ଘରକୁ ଫେରେ, ସେତେ ବେଳେ ତାହାର ମଡ଼ା ପରି ସାଦା ମୁଖଟା ଦେଖି କଠିନ ବ୍ୟାଧିଗ୍ରସ୍ତ ରୋଗୀର ଶେଷ ଅବସ୍ଥା ବୋଲି ମୋତେ ମନେହୁଏ ।

ଦିନେ ଅପରାହ୍ଣରେ ସେ ଜଣେ ବାଇଜୀ ମାଇକିନାକୁ ନେଇ ଘରକୁ ଫେରିଲା । ତାହା ଦେଖି ମୁଁ କହିଲି—"ଆଜି ମୁଁ ଷ୍ଟୋକଓକୁ ଯାଉଛି, ଜଣେ ବନ୍ଧୁ ସହିତ ଦେଖା କରି ଦୁଇ ତିନି ଦିନ ପରେ ଫେରିବି । ଏହି କେତୁଟା ଦିନ ତୁ ଘରଦ୍ୱାର ଦେଖାଶୁଣା କରିବୁ ।" ସୁତରାଂ ଦଣ୍ଡେ ଉତ୍ତର ନ କରି ଷ୍ଟୋକଓ ଅଭିମୁଖେ ଅଭିସାରରେ ବାହାରି ପଡ଼ିଲି ।

ଥରେ କଥା ପ୍ରସଙ୍ଗରେ ନାଓଜ ଠାରୁ ଜାଣି ପାରିଥିଲି ଯେ ଷ୍ଟୋକଓର ସହରତଳରେ ଓଗିକାବୁ ଷ୍ଟେସନର ଉତ୍ତର ଫାଟକ

ଠାରୁ ଉପେନ୍ଦ୍ରବାବୁଙ୍କ ଘର ହେଉଛି ମାତ୍ର କୋଡ଼ିଏ ମିନିଟର ରାସ୍ତା । ସେ ଦିନ ଶରତର ହାଉଆ ବହୁଥିଲା । ଓଗିକାବୁ ଷ୍ଟେସନରେ ଓହ୍ଲାଇଲା ବେଳକୁ ଅନ୍ଧାର ଘନେଇ ଆସିଥିଲା । ବାଟରେ ଜଣକୁ ଉପେନ୍ଦ୍ରବାବୁଙ୍କ ଘରର ଠିକଣା ପଚାରିଲି । ପ୍ରାୟ ଘଣ୍ଟାଏ ଖଣ୍ଡେ ଅନ୍ଧାରୁଆ ଗଳି କନ୍ଦିରେ ଉଦ୍ଦେଶ୍ୟହୀନ ଭାବରେ ଘୂରି ବୁଲିଲି । ହଠାତ୍ ଖଣ୍ଡିଏ ପଥରକୁ ଝୁଣ୍ଟି ପଡ଼ିଲି, ପଟେ ବନ୍ଧିତ ଫିତା ଛିଣ୍ଡି ଗଲା । ଡାହାଣ ହାତ ଧାଡ଼ିଏ ଘର ଭିତରୁ ଗୋଟିକରେ ଗୃହସ୍ଥଙ୍କର ନାମ ଫଳକ ଆଖିରେ ପଡ଼ିଲା । ଖଲେଇ ଖଲେଇ ଦୁଆର ପର୍ଯ୍ୟନ୍ତ ଗଲି । ଘରର ଭିତରଟା ଅନ୍ଧାର ହୋଇଥିଲା । କ୍ଷୀଣ ସ୍ୱରରେ ଡାକିଲି । ନାରୀ କଣ୍ଠର ଜବାବ ମିଳିଲା ।

ମୋ ଠାରୁ ତିନ ଚାରି ବର୍ଷ ବଡ଼ ଜଣେ କ୍ଷୀଣକାୟା ମହିଳା କବାଟ ଖୋଲି ଦେଲେ ଏବଂ ମୋର ପରିଚୟ ପଚାରିଲେ । ମୋ ନାମ କହିବାର ଅବକାଶ ନ ଥିଲା । ମୁଁ ପଚାରିଲି—"ଉପେନ୍ଦ୍ରବାବୁ ଘରେ ଅଛନ୍ତି ?" ସେ ମନା କଲେ, ଆଉ ଜଣାଇଲେ ଯେ ଓଗିକାବୁ ଷ୍ଟେସନ ସାମନାରେ ଶିରାଇଶି ଜଳଖିଆ ଦୋକାନରେ ପଚାରିଲେ ସେମାନେ ବତାଇ ଦେଇ ପାରିବେ ସେ କେଉଁଠି ଅଛନ୍ତି । ସେ ମୋତେ ଭିତରକୁ ଡାକି ନେଇ ଖଣ୍ଡିଏ ଚମଡ଼ା ଫିତା ଦେଲେ, ଚଟିରେ ଲଗାଇଲି । ତାହାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇ ବାହାରି ଆସିଲି ।

ଶିରାଇଶି ଜଳଖିଆ ଦୋକାନରେ ପଚାରିବାରୁ ଜଣା ପଡ଼ିଲା ଯେ ସେ ଆସାଗାଓୟା ଷ୍ଟେସନର ଉତ୍ତର ଫାଟକ ଠାରୁ ସିଧା ଦେଢ଼ ଶହ ଗଜ ଦୂରରେ ଉଇଲୋ ହୋଟେଲରେ ଥିବେ । ସେଠାରେ ଜଣେ ପରିଚାରିକା ସାଙ୍ଗରେ ବର୍ତ୍ତମାନ ମାତିଛନ୍ତି । ଷ୍ଟେସନରେ ଟିକଟ କାଟି ଟୋକିଓର ଟ୍ରେନ ଧରିଲି । ଆସାଗାଓୟାରେ ଓହ୍ଲାଇ

ଉଇଲେ ହୋଟେଲରେ ଯାଇ ଉପସ୍ଥିତ ହେଲି । ସେତେ ବେଳେ ହୋଟେଲରେ କେହି ନ ଥିଲେ । ପରିଚାରିକାଟି ଜଣାଇଲା ସେ ସେ ଏବେ ଦଳେ ଲୋକଙ୍କ ସାଙ୍ଗରେ ବାହାରିଗଲେ, ନଶିଓଗିର 'ଚନ୍ଦୋସ୍ତି'ରେ ଘଣ୍ଟାଏ ମଦ ଖାଇ କଟାଇବେ ।

ଫେର୍ ଟ୍ରେନରେ ଚଢ଼ିଲି, ଏଥର ଏକାବେଳେ ବଫସାତ ଦିଗକୁ । ନଶିଓଗିରେ ଓହ୍ଲାଇ 'ଚନ୍ଦୋସ୍ତି'ର ନାଲ ଆଲୁଅ ଚିହ୍ନି ସିଧା ଦରଜା ଠେଲି ଭିତରେ ପଶିଲି । ଦମ ବନ୍ଦ ହୋଇ ଯାଉଥିବା ଧୂଆଁରେ ଭର୍ତ୍ତି ଗୋଟିଏ ଛୋଟ କୋଠରୀରେ ଦଶ ବାର ଜଣ ଲୋକ ଟେବୁଲକୁ ଘେରି ରହି ପାଟି ଗୋଳ କରି ମଦ ଖାଉଥିଲେ । ସେମାନଙ୍କ ଭିତରେ ମୋ ଠାରୁ କମ ବୟସୀ ତିନି ଜଣ ଝିଅ ମଧ୍ୟ ଥିଲେ । ସେମାନେ ପୁରୁଷଙ୍କ ସହିତ ସମାନ ତାଳ ଦେଇ ସିଗାରେଟ ଟାଣୁଥିଲେ ଏବଂ ମାତଲାମି କରୁଥିଲେ ।

ଚାରି ଆଡ଼େ ଆଖି ବୁଲାଇ ତାହାଙ୍କୁ ଖୋଜି ବାହାର କଲି । ମନେ ହେଲା, ହୁଏତ ସ୍ୱପ୍ନ ଦେଖୁଛି । ଛଅ ବର୍ଷ ଭିତରେ ସେ ଏକା-ବେଳେ ବଦଳି ଯାଇଛନ୍ତି—ଅସଜଡ଼ା ବିବର୍ଣ୍ଣ କେଶ, ନିଷ୍ପ୍ରଭ ମୁଖ, ରକ୍ତ ଚକ୍ଷୁ । ମୋତେ ଦେଖି ପାରି ଝିଅଟିଏ ଆଖି ମାରି ଉପ୍ସେହାରଙ୍କୁ ଠାରି ଦେଲା । ସେ ମୁଣ୍ଡ ଟେକି ମୋତେ ଦେଖିଲେ ଏବଂ ନିର୍ବିକାର ଭାବରେ ଚଟୁକି ବଜାଇ ମୋତେ ଡାକିଲେ । ମୁଁ ଯାଇ ଚୁପ୍‌ଚାପ ତାହାଙ୍କ ପାଖରେ ବସି ପଡ଼ିଲି । ଉପ୍ସେହାର ମୋତେ ଗିଲାସେ ଗରମ ମଦ ଦେଲେ । ଦୁହେଁ ମଦ ଖାଇଲୁ । ଅନ୍ୟମାନେ ମାତଲାମି କରୁ ଥାଆନ୍ତି । ମୁଁ ନିଃଶବ୍ଦରେ ପାଖ ଘରକୁ ଯାଇ ହୋଟେଲର ମାଲିକାଣୀକୁ ଫୋନ୍ କଲି ଘରକୁ ଗଲି । ସେଠାରୁ ଫେରିଲା ବେଳେ ଦେଖିଲି, କମ ବୟସୀ ସୁନ୍ଦରୀ ଝିଅ ଟୀ ମୋତେ ଅପେକ୍ଷା କରିଛି । ହୋଟେଲର ମାଲିକାଣୀ ମୋତେ କହିଲା—

"ଯାହା କରୁଛ ଅଛି ଟିକିଏ ଖାଇ ଦିଅ । ଏହି ମାତାଲଗୁଡ଼ାକର ପାଲରେ ପଡ଼ିଲେ ରାତିଟା ତୁମକୁ ଭୋକ ଉପାସରେ କଟାଇବାକୁ ପଡ଼ିବ । ଟୀ, ଏଠି ଆସି ବସ ।"

ମୁଁ ଟୀ ପାଖରେ ବସି ହିଟାରରେ ହାତ ସେକିବାକୁ ଲାଗିଲି । ମାଲିକାଣୀ ବୋତଲରୁ ପିଆଲାରେ ମଦ ଢାଳିଲା । ଆମେ ତିନି ଜଣ ନୀରବରେ ପାନ କଲୁ ।

ମାଲିକାଣୀ ଉଦ୍‌ବେଗରେ ଟୀକୁ ପଚାରିଲା—"ନାଓଜି କେମିତି ଅଛି ?" ମୁଁ ଚମକି ପଡ଼ିଲି ।

ଟୀର ଗାଲ ଲାଲ ପଡ଼ିଗଲା । ଇତସ୍ତତଃ କରି ସେ ଜବାବ ଦେଲା—"କିପରି ଜାଣିବି ? ମୁଁ ତ ତାହାର ମାଲିକ ନୁହେଁ ।"

ମାଲିକାଣୀ ନାଓଜି ସମ୍ବନ୍ଧରେ ମଦ ଓ ମାଇକିନା ନେଇ ସମାଲୋଚନା କରିବାକୁ ଲାଗିଲା ।

ଈଷତ୍ ହସି ବାଧା ଦେବାକୁ ବାଧ୍ୟ ହେଲି—"ମାଫ୍ କରିବେ । ନାଓଜି ମୋ ଭାଇ ।"

ମାଲିକାଣୀ ଅବାକ ହୋଇ ମୋ ମୁହଁକୁ ଅନାଇ ରହିଲା । କିନ୍ତୁ ଟୀ ସହଜ ସ୍ୱରରେ କହିଲା—"ତୁମ ଦୁହିଁଙ୍କ ଚେହେରାରେ ଖୁବ୍ ମେଳ ଅଛି ।"

ମାଲିକାଣୀର ଗଳାରେ ଶ୍ରଦ୍ଧାର ଭାବ ଫୁଟିଲା—"ହଁ, ସେଥିପାଇଁ ତ ! ତାହା ହେଲେ ତୁମେ ଏହି ନରକକୁ ଆସିଲ କାହିଁକି ? ଉୟେହାରାଙ୍କ ସହିତ ପରିଚୟ ଅଛି ବୋଧ ହୁଏ ?"

"ହଁ, ପ୍ରାୟ ଛଅ ବର୍ଷ ତଳେ ଥରେ ତାହାଙ୍କୁ ଦେଖିଥିଲି ।" ମୁହଁ ନୁଆଁଇଲି ।

ମାଲିକାଣୀ ମୋ ହାତକୁ ନୁଡ଼ଲ ବଢ଼ାଇ ଦେଲା । ମୁଁ ନୁଡ଼ଲର ବାମ୍ପରେ ମୁହଁ ଗୁଞ୍ଜି ଚଟପଟ ଖାଇବାକୁ ଲାଗିଲି । ମନେ

ଦେଲ, ସତେ ଯେମିତି ବଞ୍ଚି ରହିବାର ଅସୀମ ଦୁଃଖକୁ ମୁଁ ଏହି ପ୍ରଥମ ଥର ଗଭୀର ଭାବରେ ଅନୁଭବ କଲି । ଗୁଣୁଗୁଣୁ କରି କରି ଜଗନ୍ନିବାସ୍ ଆସି ମୋ ପାଖରେ ବସି ପଡ଼ିଲେ ଏବଂ ମାଲ-କାଣୀଙ୍କ ହାତକୁ ଖଣ୍ଡିଏ ବଡ଼ ଲଫାପା ବଢ଼ାଇ ଦେଲେ । ସେଥିରେ ଦଶ ହଜାର ଇୟେନ ଥିଲା ! ମାଲକାଣୀ ହସି ହସି କହିଲା—
"ଭାବ ନାହିଁ ଯେ ଏତିକରେ ତୁମେ ପାର ପାଇଯିବ ।"

"ବାକି ପାଉଣା ଅ.ସନ୍ତା ବର୍ଷ ଚଇତ କରିଦେବ ।" ଜଗନ୍ନିବାସ୍ ହସ ଚାଳରେ କହିଲେ ପଚାରିଲେ —"ଏଠାରେ ରାତିରେ ରହିବାର ତୁମର କିଛି ବ୍ୟବସ୍ଥା ନାହିଁ ବୋଧ ହୁଏ ତାହା ହେଲେ ଆମ ସମସ୍ତଙ୍କ ଘରେ ରୋଟାଏ ଘରେ ଶୋଇ ପାରିବ ?"

ମାଲକାଣୀ ବାଧା ଦେଲା ।

ରାସ୍ତାକୁ ବାହାରି ଆସିଲାରୁ ବେଶ୍ ଜଣା ପଡ଼ିଲା, ସେତେବେଳେ ପ୍ରାୟ ଅଧ ରାତି । ପବନର ବେଗ କମିଛି । ଆକାଶରେ ତାରା ଭରପୂର । ଆମେ ଦୁହେଁ ପାଖାପାଖି ଚାଲିଲୁ ।

ମୃଦୁ ହସି ମୁଁ ପଚାରିଲି—"ଆମେ ଦୁହେଁ ଏକା ରହି ପାରିବାକୁ ଆପଣ ଚାହିଁଥିଲେ ନା ?"

ସେ ମୁଖ ବକ୍ରିତ କରି ଜବାବ ଦେଲେ—"ସେପରି ହୋଇଛି ତ !"

"ଆପଣ ଅତ୍ୟଧିକ ମଦ ଖାଆନ୍ତି । ମଦ କଅଣ ଏତେ ଭଲ ଲାଗେ ?"

"ବିକଟ ଗନ୍ଧ ।"

"ଆପଣଙ୍କ କାମ କେମିତି ଚାଲିଛି ?"

"ଭରି ଖରାପ । ଏବେ ଯାହା ଲେଖିବାକୁ ବସୁଛି, ସବୁ ଏକାବେଳେ ନିର୍ବୋଧର ଅର୍ଥହୀନ ପ୍ରଳାପ ହୋଇ ଯାଉଛି । ଜୀବନର ଗୋଧୂଳି, ଶିଳ୍ପର ସନ୍ଧ୍ୟା !"

ମୋ ତୁଣ୍ଡରୁ ଖସିଗଲା— "ଇଉଟ୍ରିଲୋ ।"

"ହଁ, ଇଉଟ୍ରିଲୋ । ଲୋକେ କହନ୍ତି, ଭଦ୍ରଲୋକ ଏବେ ବି ଜୀବିତ ଅଛନ୍ତି । ଏକ୍ଷଣି ମଦ ତାହାଙ୍କୁ ଖାଉଛି । ଗଲା ଦଶ ବର୍ଷ ହେଲା ତାଙ୍କର ଛବିସବୁ ଅସମ୍ଭବ ରକମ ଅଶ୍ଳୀଳ ଓ ଜଘନ୍ୟ ହୋଇଅଛି ।"

"ଖାଲି କଅଣ ଇଉଟ୍ରିଲୋ ? ଆଜି ଅଧିକାଂଶ ପ୍ରତିଭାଶାଳୀଙ୍କର ଏକ ଅବସ୍ଥା ।"

"ହଁ, ସେମାନେ ସୃଜନୀ ଶକ୍ତି ହରାଇଛନ୍ତି । କିନ୍ତୁ ନୂତନମାନଙ୍କର ମଧ୍ୟ ସେହି ଅବସ୍ଥା । କୋଡ଼ିଏରେ ପାଦ ଦେଇ ଶୁଖି ଯାଉଛନ୍ତି ।"

ସେ ମୋ କାନ୍ଧ ଉପରେ ହାତ ରଖିଲେ । ଧୀରେ ଧୀରେ ଆଗେଇ ଯାଉଁ ଯାଉଁ ତାଙ୍କର ଆଲିଙ୍ଗନ ଭିତରେ ମୋତେ ବନ୍ଦୀଭୂତ କରିଦେଲେ ।

"ମୋ ଚିଠିସବୁ ପଢ଼ିଛନ୍ତି ?"

"ହଁ ।"

"ଆପଣଙ୍କ ଠାରୁ କି ଧରଣର ଉତ୍ତର ଆଶା କରି ପାରେ ?"

"ସତରେ ମୁଁ ଆଭିଜାତ୍ୟ ପସନ୍ଦ କରେ ନା । ସେ ଦିଗରୁ ତୁମ ଭଳି ନାଓଜ ଯଥେଷ୍ଟ ସୁଧୁରିଛି । ବେଳେ ବେଳେ ତାହାର ଢଙ୍ଗ ବି ମୋ ପକ୍ଷରେ ଅସହ୍ୟ ହୁଏ । ମୁଁ ତ ଚଷା ପୁଅ । ଏମିତି ଏକ

ସ୍ରୋତ ନଦୀ ପାଖରେ ଗଲା ବେଳେ ପୁରୁଣା ଦିନର କଥା ମୋର ମନେ ପଡ଼େ ।"

ଅନ୍ଧାରରେ ଅସ୍ପଷ୍ଟ ଶବ୍ଦ କରି ଗୋଟିଏ ସ୍ରୋତ ନଦୀ ବହି ଯାଉଛି । ଆମେ ତାହାରି କୂଳେ କୂଳେ ଚାଲିଛୁଁ ।

"ମୁଁ ବ ଗାଁର ଝିଅ, ଚାଷ କରେ, ଏକାବେଳେ ଗରିବ ଗାଉଁଲି ଝିଅ ।"

ତାଙ୍କର ଗଳାର ସ୍ୱର ରୁକ୍ଷ ହେଲା—"ତୁମେ କଅଣ ଏବେ ବି ମୋତେ ଭଲ ପାଅ ? ମୋ ଠାରୁ ସନ୍ତାନ ଚାହଁ ?"

ମୁଁ ଉତ୍ତର ଦେଲି ନାହିଁ ।

ସେ ହଠାତ୍ ତାଙ୍କର ମୁଖ ମୋ ମୁଖ ଉପରକୁ ନେଇ ଆସିଲେ ଏବଂ ମୋତେ ପ୍ରଚଣ୍ଡ ଭାବରେ ଚୁମା ଦେଲେ । ସେହି ଚୁମ୍ବନ ଭିତରେ ତୀବ୍ର କାମନାର ଆଭାସ ଥିଲା । ସେହି ଚୁମ୍ବନ ଗ୍ରହଣ କଲା ବେଳେ ମୋ ଆଖିରେ ଲୁହ ଆସିଲା ।

ପାଖା ପାଖି ଯାଉଁ ଯାଉଁ ସେ କହିଲେ—"ଦେଖୁଛି, ତୁମ ପ୍ରେମରେ ମଜି ଯାଇଛି ।" ହସି ପକାଇଲେ ।

କିନ୍ତୁ ମୋତେ ଟିକିଏ ହସ ମାଡ଼ିଲା ନାହିଁ । ମାଲୁମ ହେଲା, ସତେ ଯେମିତି ମୁଁ ଅନ୍ଧାରରେ ଏକା ଚାଲିଛି ।

ବୋଧ ହୁଏ ଶିଳ୍ପୀ ମିଷ୍ଟର ଫୁକଙ୍କ ଘରେ ସମସ୍ତେ ଶୋଇ ପଡ଼ିଥିଲେ । "ଟେଲିଗ୍ରାମ ! ମିଷ୍ଟର ଫୁକ, ଟେଲିଗ୍ରାମ ଆସିଛି"— ଉପେନ୍ଦ୍ରବାବୁ ଚିତ୍କାର କରି ଦରଜାରେ ଧକା ମାରିବାକୁ ଲାଗିଲେ ।

"ଉପେନ୍ଦ୍ରବାବୁ ନା କଅଣ ?" ପୁରୁଷ କଣ୍ଠରେ ଜବାବ ମିଳିଲା ।

"ଠିକ୍ ଧରିଛ । ରାଜପୁତ୍ର ଓ ରାଜକନ୍ୟା ଆସିଛନ୍ତି ମାତ୍ର ଗୋଟିଏ ରାତିର ଆଶ୍ରୟର ଆଶାରେ । ବାହାରେ ଏତେ ଶୀତ ଯେ କାଶି କାଶି ପ୍ରାଣ ବାହାରି ଗଲାଣି ।"

ଦାଣ୍ଡ ଦୁଆର ଖୋଲି ଗଲା । ଜଣେ ପଚାଶ ବର୍ଷ ବୟସ୍କ କ୍ଷୁଦ୍ରକାୟ ଭଦ୍ରଲୋକ ଲଜରେ ହସି ହସି ଆସି ଆମକୁ ଅଭ୍ୟର୍ଥନା କଲେ । ଉପ୍ପେନ୍ହାଉ କୋଠ ନ ଖୋଲି ମୋତେ ହାତ ଧରି ସିଡ଼ିରେ ଦୋତାଲାକୁ ନେଇଗଲେ । ଆମେ ଗୋଟାଏ ଅନ୍ଧାର ଘରେ ପ୍ରବେଶ କଲୁ । ଉପ୍ପେନ୍ହାଉ ସୁଇଚ ଟିପି ଆଲୁଅ ଜଳାଇଲେ । ଆଲମାରୀରୁ ବିଛଣାପତ୍ର କାଢି ଆଣିଲେ—"ତୁମେ ଏକ୍ଷଣି ଶୋଇ ପଡ଼ । ସକାଳେ ଆସି ମୁଁ ତୁମକୁ ନେଇ ଯିବି ।" ପ୍ରଚଣ୍ଡ ଶବ୍ଦ କରି ସେ ସିଡ଼ିରେ ତଳକୁ ଓହ୍ଲାଇ ଗଲେ । ଆଲୁଅ ଲିଭାଇ କୋଠରୀ ଖୋଲି କମନୋ ପିନ୍ଧି ବିଛଣାରେ ଗଡ଼ି ପଡ଼ିଲି ।

କେତେ ବେଳେ ଠିକ୍ ମନେ ନାହିଁ, ଆଖି ଖୋଲି ଦେଖିଲି ଭଦ୍ରଲୋକ ମୋ କଡରେ ଶୋଇଛନ୍ତି । ପ୍ରାୟ ଘଣ୍ଟାଏ କାଳ ଦୃଢ଼ ପ୍ରତିଜ୍ଞ ଭାବରେ ନିଃଶବ୍ଦରେ ତାହାଙ୍କ ସହିତ ଯୁଝିଲି । ହଠାତ୍ ତାହାଙ୍କ ପ୍ରତି କେମିତିକା ମାୟା ହେଲା, ଆତ୍ମ ସମର୍ପଣ କଲି ।

"ଆପଣ ଯେମିତି ଭାବରେ ଜୀବନ ଯାପନ କରୁଛନ୍ତି, ସେଥିରେ ଶରୀର ଖରାପ ହେଉ ନାହିଁ ? ମୋର ଧାରଣା, ଆପଣଙ୍କର କାଶ ସାଙ୍ଗରେ ବୋଧ ହୁଏ ରକ୍ତ ପଡ଼ୁଛି ।"

"କେମିତି ଜାଣିଲ ?"

"ମାଆଙ୍କ ମୃତ୍ୟୁ ଆଗରୁ ଏମିତି ଗୋଟାଏ ଗନ୍ଧ ପାଇଥିଲି ।"

"ଜୀବନରେ ହତାଶ ହୋଇ ମୁଁ ମଦ ଧରିଛି । ଏହି ଦୁଃଖମୟ ସଙ୍ଗୀହୀନ ଶିଥିଳ ଜୀବନ ମୋ ହୃଦୟ ବିଦୀର୍ଣ୍ଣ କରୁଛି । ଯେତେ ବେଳେ ମଣିଷ ଉପଲବ୍ଧି କରେ ଯେ ଦୁନିଆରେ ବଞ୍ଚି

ରହିବ ଆଉ କେବେ ଯଶ କମ୍ୱା ସୁଖର ମୁଖ ଦେଖି ପାରିବ ନାହିଁ, ସେତେ ବେଳେ ତାହାର କି ଅବସ୍ଥା ହୁଏ ? ପ୍ରଚଣ୍ଡ ଜୀବନ ସଂଗ୍ରାମ ! ହାଡ଼ଭଙ୍ଗା ପରିଶ୍ରମ ! ଫଳ କଅଣ ସେଥିରେ ? ଖାଲି ଭୋକିଲି ପଶୁର ମୁଖରେ ଦାନା ଦେବା । ଏହା କଅଣ ଅଦ୍ଭୁନପୂ ?"

"ନା ।"

"ଖାଲି ଅଛି ଭଲ ପାଇବା, ଠିକ୍ ଯେମିତି ତୁମେ ଲେଖିଥିଲ ।"

"ହଁ ।"

ମୋ ପ୍ରେମର ପ୍ରଦୀପ ଲିଭିଗଲା ।

ଯେତେବେଳେ ଘରେ ପୁଣି ମୃଦୁ ଆଲୁଅ ହେଲା, ମୁଁ ଦେଖିଲି ସେହି ଘୁମନ୍ତ ମଣିଷର ପ୍ରକୃତ ଚେହେରା । ତାହାର ମୁଖ ମଣ୍ଡଳରେ ଆସନ୍ନ ମୃତ୍ୟୁର ଛାୟା ! ଏହି ମୁଖ ବଳିର ପଶୁର । ଏକ ଅମୂଲ୍ୟ ଉତ୍ସର୍ଗ ।

ମୋ ମନର ମଣିଷ । ମୋର ଇନ୍ଦ୍ରଧନୁ । ମୋର ଶିଶୁ । ଘୃଣ୍ୟ ମଣିଷ । ବ୍ୟଭିଚାରୀ ପୁରୁଷ ।

ମନେ ହେଲା, ସାରା ଦୁନିଆରେ ଏମିତି ସୁନ୍ଦର ମୁଖର ପଟାନ୍ତର ନାହିଁ । ନୂତନ ପ୍ରେମର ଉତ୍ତେଜନାରେ ମୋ ଛାତି କମ୍ପିଲା । ମୁଁ ତାହାଙ୍କୁ ଚୁମ୍ବନ କଲି । ଆଖି ବୁଜି ଉପେନ୍ଦ୍ରହାରି ମୋତେ ଛାତି ଉପରକୁ ଭିଡ଼ି ନେଲେ ।

"ଏତେ ଦିନେ ମୁଁ ସୁଖୀ ।"

ଉପେନ୍ଦ୍ରହାରି ହସିଲେ—"କିନ୍ତୁ ଖୁବ୍ ବିଳମ୍ବ ହେଲା । ସନ୍ଧ୍ୟା ଯେ ମାଡ଼ି ଆସୁଛି ।"

"ଏବେ ପରା ଭୋର ହେଲା ।"

ସେ ଦିନ ସକାଳେ ନାଓଜି ଆତ୍ମହତ୍ୟା କଲା ।

୭

ନାଓଜଙ୍କର ଶେଷ କଥା :

କାଜୁକୋ ।

କିଛି ଫଳ ନାହିଁ । ମୁଁ ଗ୍ଲଲି ।

ଯେଉଁମାନେ ବଞ୍ଚିବାକୁ ଗ୍ଲହାନ୍ତି, ସେମାନେ ହିଁ କେବଳ ବଞ୍ଚି ରହନ୍ତୁ ଦୁନିଆରେ । ମଣିଷର ଯେମିତି ବଞ୍ଚି ରହିବାର ଅଧିକାର ଅଛି, ସେମିତି ମରିବାର ସ୍ୱାଧୀନତା ମଧ୍ୟ ରହିବା ଉଚିତ ।

ମୋ ପରି କଣଲୟ ପକ୍ଷରେ ଦୁନିଆରେ ପ୍ରାଣ ଧାରଣ କଠିନ । ମୋ ଭିତରେ ଅପୂର୍ଣ୍ଣତା ରହିଛି । ତେବେ ବହୁ ଚେଷ୍ଟାରେ ଏତେ ଦିନ ବଞ୍ଚି ରହିଲି ।

ଉଚ୍ଚ ବିଦ୍ୟାଳୟରେ ଭର୍ତ୍ତି ହେବା ପରେ ଯେତେବେଳେ ମୁଁ ପ୍ରଥମେ ମୋ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ପରିବେଶରେ ବଢ଼ିଥିବା ଦୁଷ୍ଟ ପିଲମାନଙ୍କ ପାଲରେ ଯାଇ ପଡ଼ିଲି, ସେତେବେଳେ ସେମାନଙ୍କ ଉଦ୍ଧାମତାରୁ ରକ୍ଷା ପାଇବା ପାଇଁ ନିଶା ଆରମ୍ଭ କଲି । ଅଧା ନିଶାର ଜୋରରେ ମୁଁ ସେମାନଙ୍କର ପ୍ରତିରୋଧ କରୁଥିଲି । ପରେ ଫଉଜରେ ଭର୍ତ୍ତି ହୋଇ ବଞ୍ଚି ରହିବାର ଶେଷ ଅବଲମ୍ବନ ସ୍ୱରୂପ ଅଫିମ ଧରିଲି । ସେତେବେଳେ ମୋର କି ଅବସ୍ଥା ବୋଧ ହୁଏ ତୁ କଳନା କରି ପାରିବୁ ନାହିଁ ।

ମୁଁ ନୃଶଂସ ହେବାକୁ ଗ୍ଲହିଲି । ମୋତେ ବଂଶ ମର୍ଯ୍ୟାଦା ଭୁଲି ଯିବାକୁ ହେଲା । ପିତୃ ରକ୍ତ ଅସ୍ୱୀକାର କଲି, ମାଆଙ୍କ ଦାକ୍ଷିଣ୍ୟ ପ୍ରତ୍ୟାଖ୍ୟାନ କଲି, ଆଉ ଭଉଣୀ ପ୍ରତି ଉଦାସୀନ ହେଲି । ଅମାର୍ଜିତ ହେଲି । ଏହାର ଷାଠିଏ ଭାଗ ଥିଲା ଛଳନା, ଅଭିନୟ, ଗ୍ଲତୁରୀ ମାତ୍ର । ସାଧାରଣ ଲୋକଙ୍କ ସହିତ ଏମିତି ଉଦ୍ଧତ ବ୍ୟବହାର କରୁଥିଲି ଯେ ସେମାନେ ମୋ ପ୍ରତି କ୍ରୁଦ୍ଧ ହେଉଥିଲେ । ଉଚ୍ଚ ଶ୍ରେଣୀର ଶିଷ୍ଟାଗ୍ଲରସବୁ ମୁହୂର୍ତ୍ତେ ବରଦାସ୍ତ କରୁ ନ ଥିଲି । ଅନ୍ୟ ଦିଗରେ

ଯେଉଁ କ୍ଷମା ଓ ଗୁଣୀମାନଙ୍କର ସଙ୍ଗ ମୁଁ ଦିନେ ସ୍ୱେଚ୍ଛାରେ ବର୍ଜନ କରିଥିଲି, ସେଠାକୁ ଫେରିଯିବା ବି ଅସମ୍ଭବ ହେଲା ।

ସବୁ ମଣିଷ ସମାନ । ଯେ ଏହି ଅସାଧାରଣ ଉକ୍ତି ବ୍ୟକ୍ତ କରିଥିଲେ ମୁଁ ତାହାଙ୍କୁ ଜଣେ ଦାର୍ଶନିକ ବୋଲି ମାନିବାକୁ ପ୍ରସ୍ତୁତ ନୁହେ । ଏହା ମୂଳରେ ଅଛି ଚରିତ୍ର କିମ୍ବା ଈର୍ଷା । ଏହା ସହିତ ଗଣତନ୍ତ୍ର କିମ୍ବା ମାର୍କସବାଦର କିଛି ସଂପର୍କ ନାହିଁ । ଏହି ହୀନ ମନ୍ତବ୍ୟ ସହିତ ଜଡ଼ିତ ଅଛି ମଣିଷର ଅଧଃପତନ, ଗର୍ବର ଅବସାନ ଓ ଉଦ୍ୟମର ଉଚ୍ଛେଦ । କେବଳ ଅପଦାର୍ଥ ହିଁ କହି ବୁଲିବ ଯେ ସେ ଆଉ ସମସ୍ତଙ୍କ ସହିତ ସମାନ । କାହିଁକି ସମାନ ? ଶ୍ରେଷ୍ଠତର ବୋଲି କହି ପାରୁ ନାହିଁ ? ମୋର ଧାରଣା, ଏ ଯୁଗର ଯାବତୀୟ ଉତ୍କଣ୍ଠା, ହିଂସା, ଅବମାନନା, ଉପହାସ, ବଞ୍ଚନା, ଅପମାନ, ହୀନମନ୍ୟତାର ମୂଳରେ ରହିଛି ଏହି ଅଶାଳୀନ ଘୃଣ୍ୟ ଉକ୍ତି ଟିକକ ।

ଏହି ଉକ୍ତିର କଦର୍ଯ୍ୟତା ସମ୍ବନ୍ଧରେ ମୋର କିଛି ସନ୍ଦେହ ନ ଥିଲା । ମୁଁ ଖୁବ୍ ଭୟ ପାଇଲି ଏବଂ ବିବ୍ରତ ହେଲି । ସକଳ ପ୍ରୟାସ ବ୍ୟର୍ଥ ହେବାରୁ, ମଦ ଓ ବିଷାକ୍ତ ମାଦକ ଦ୍ରବ୍ୟର ଗୁଣରେ କ୍ଷଣିକ ବିଶ୍ରାମ ପାଇଲି । ତା ପରେ ସବୁ ଗୋଳମାଳ ହେଲା ।

ମୁଁ ଶୈଶବରୁ ଗୋଟାଏ ଅଳସୁଆ, କାମୁକ, ସ୍ୱାର୍ଥପର ଓ ନଷ୍ଟ ପିଲା— ଅଦ୍ୟାବଧି ଲୋକ ମୁଖରୁ ଏହି ମନ୍ତବ୍ୟ ଶୁଣି ଶୁଣି ଅପ୍ରସ୍ତୁତ ହୋଇ ମୁଣ୍ଡ ତଳକୁ କରିଛି । କିନ୍ତୁ ଆଜି ମୃତ୍ୟୁର ମୁଖରେ ଠିଆ ହୋଇ ପ୍ରତିବାଦ ଜଣାଉଛି ।

କାଜୁକୋ, ସୁନା ଭଉଣୀଟା ପରି, ମୋତେ ବିଶ୍ୱାସ କର ।

ଆମୋଦ ଆହ୍ଲାଦରେ କେବେ ତୃପ୍ତି ପାଇ ନାହିଁ । ଆଭି-ଜାତ୍ୟର ଗ୍ଲାନିରୁ ଦୂରେଇଯିବା ଆଶାରେ ନିଦାରୁଣ ଉଚ୍ଛୃଙ୍ଖଳତା ଭିତରେ ବୁଡ଼ି ରହିଲି ।

ଆହୁରି ଆଗରୁ ମୋର ମରିବା ଉଚିତ ଥିଲା । ଖାଲି ମାଆଙ୍କର ସ୍ନେହ ଯୋଗୁଁ ତାହା ସମ୍ଭବ ହୋଇ ପାରି ନାହିଁ । ସେ ଜୀବିତ ଥିବା ଯାଏ ସ୍ୱେଚ୍ଛା ମରଣକୁ ଜୋର କରି ଦୂରକୁ ଠେଲି ରଖିଥିଲି । ଏକ୍ଷଣି ମୋ ମୃତ୍ୟୁରେ କେହି ଏତେ ବେଶୀ ବ୍ୟଥିତ ହେବେ ନାହିଁ । ତୋର କେତେ କଷ୍ଟ ହେବ ମୁଁ ଜାଣେ । ତେବେ ମୋର ସ୍ୱେଚ୍ଛାକୃତ ମରଣର ଉଦ୍ଦେଶ୍ୟ ଜାଣି ତୁ ସାନ୍ତ୍ୱନା ପାଇବୁ ।

କାଜୁକୋ, ମୋ ପକ୍ଷରେ ମରଣ ବରଂ ଭଲ । ଅର୍ଥ ନିମନ୍ତେ ମଣିଷ ସହିତ ଝଗଡ଼ା କରିବାର ଶକ୍ତି ମୋର ନାହିଁ । ଏପରିକି ଉପନ୍ୟାସଙ୍କ ସହିତ ମଦ ଖାଇଲେ ମୋ ଭାଗର ଦାମ ମୁଁ ଦେଇଛି ; ସେଥି ପାଇଁ ସେ ମୋତେ ଘୃଣା କରୁଥିଲେ ! କିନ୍ତୁ ମୁଁ ବୁଝିଥିଲି, ଅପରର କଷ୍ଟାର୍ଜିତ ଅର୍ଥରେ ଆମୋଦ ଆହ୍ଲାଦ କଲେ ମୋତେ ଅସ୍ୱସ୍ତି ଲାଗେ । ଏପରିକି ନିଜ ଘରୁ ଟଙ୍କା ନେଇ ମାଆଙ୍କୁ ଓ ତୋତେ ଦାରୁଣ କଷ୍ଟରେ ପକାଇ ଫୂର୍ତ୍ତି କରି ରତିଏ ସୁଖ ପାଇନାହିଁ ।

ଯାହା ଘଟି ଯାଇଛି ତା ପରେ ମୋର ବଞ୍ଚିବା ନିରର୍ଥକ । ମୋ ପାଖରେ ଗୋଟାଏ ବିଷ ଅଛି ଯାହାକୁ ଖାଇଲେ ମଲା ବେଳେ କିଛି ଯନ୍ତ୍ରଣା ହୁଏ ନାହିଁ । ଫଉଜରେ ଗୃକରି ସମୟରେ ଏହି ବିଷ ମୋ ହାତକୁ ଆସିଥିଲା ।

କାଜୁକୋ, ତୁ ସୁନ୍ଦରୀ ଓ ବୁଦ୍ଧିମତୀ । ତୋ ପାଇଁ ମୋର ଆଦୌ ଚିନ୍ତା ନାହିଁ । ମୋର ଦୃଢ଼ ବିଶ୍ୱାସ ଯେ ତୁ ନିଶ୍ଚୟ ବିଭା ହେବୁ, ତୋର ଛୁଆ ପିଲା ହେବେ ଏବଂ ସ୍ୱାମୀର ବାହୁ ବନ୍ଧନ ଭିତରେ ତୁ ନବ ଜୀବନ ଲଭିବୁ ।

ମୋର ଗୋଟାଏ ଗୁପ୍ତ କଥା ଅଛି । କାହାକୁ ମୁଁ ଏଯାଏ ଏହା କହି ନାହିଁ । ବହୁତ ଦିନରୁ ଲୁଚାଇ ରଖିଛି । ଖାଲି ଆଜି ତୋତେ

ମୋର ଧାରଣା, ଆଖିରେ ନ ଦେଖିଲେ ସୁଦ୍ଧା ତୁ ତାଙ୍କୁ ଜାଣୁ । ସେ ତୋ ଠାରୁ ଟିକିଏ ବଡ଼ ହେବ । ଆଖି ଦୁଇଟି ବାଦାମ ଆକାରର, ସୁଦୀର୍ଘ କେଶ, ଧୋବ ଫରଫର ପୋଷାକ । ଜଣେ ଲମ୍ପଟ ବର୍ବର ଚନ୍ଦକରର ସ୍ତ୍ରୀ । ଅତି ଶାନ୍ତ ଓ ମଧୁର, ଅଧର କୋଣରେ ନିରନ୍ତର ମୃଦୁ ହସ ଲାଗି ରହିଥାଏ ।

ଗ୍ରୀଷ୍ମର ଏକ ସନ୍ଧ୍ୟାରେ ମୁଁ ସେହି ଚନ୍ଦକରର ଘରକୁ ଯାଇ ଦେଖିଲି ସେ ନାହିଁ । ତାହାର ସ୍ତ୍ରୀ ମୋତେ ଅପେକ୍ଷା କରିବାକୁ କହିଲା । ପ୍ରାୟ ଅଧ ଘଣ୍ଟାଏ ଯାଏ ବସି ବସି ପତ୍ରିକାର ପୃଷ୍ଠା ଲେଉଟାଇଲି । ଯେତେ ବେଳେ ଦେଖିଲି ତାହାର ଫେରିବାର କୌଣସି ଲକ୍ଷଣ ଦିଶୁ ନାହିଁ, ଉଠି ପଡ଼ିଲି । ବିଦାୟ ନେବାର ଅବକାଶରେ ତାହାର ଆଖି ଆଡ଼କୁ ଅନାଇ ମୋର ମରଣ ହେଲା । କହିଲି— ଯାଉଛି । ସଙ୍ଗେ ସଙ୍ଗେ ସେ ମୋ ପାଖକୁ ଆସି ମୋ ମୁହଁକୁ ଚାହିଁ ଅବିଚଳିତ ଶାନ୍ତ ଅସଙ୍କୋଚ ସ୍ୱରରେ ପଚାରିଲା—କାହିଁକି ? ମୋର ସମସ୍ତ ସଙ୍କୋଚ ଦୂର ହୋଇଗଲା । ମାତ୍ର ଫୁଟେ ଦୂରରେ ସେହି ଅପରୂପ ନୟନ ଯୁଗଳକୁ ଚାହିଁ ରହି ଏକ ଅସୀମ ସୁଖର ପାରା-ବାରରେ ବୁଡ଼ିଗଲି । ଶେଷକୁ ସ୍ମିତ ହସି କହିଲି — କିନ୍ତୁ··· । ତାହାର ମୁଖରେ ଗାମ୍ଭୀର୍ଯ୍ୟର ଛାୟା —ତାଙ୍କର ଆସିବା ବେଳ ହେଲା । ହଠାତ୍ ମୋର ମନେ ହେଲା, ଏହି ମୁଖର ଭାବରେ ଯେଉଁ ଅପୂର୍ବ ବସ୍ତୁ ମିଳିଲା ହୁଏତ ଲୋକେ ତାହାକୁ ସତୀତା ସଂଜ୍ଞା ଦେଇ ଥାଆନ୍ତି । କହିଲି— ଫେର୍ ଆସିବି । ସେ କହିଲା— ଆସିବେ ।

ଆଉ ଗୋଟିଏ ଶୀତର ସନ୍ଧ୍ୟାରେ ତାହାର ମୁଖର ସୌନ୍ଦ-ର୍ଯ୍ୟରେ ମୁଁ ଅଭିଭୂତ ହୋଇଗଲି । ସେ ଦିନ ସକାଳୁ ଚନ୍ଦକରର ଘରେ ମଦ ଖାଇ ଖାଇ ତଥାକଥିତ ଜାପାନୀ ସଂସ୍କୃତିର ଧ୍ୱଜାଧାରୀ ସମାଜକୁ ଗାଳିଗୁଲଜ କରି ହୋ ହୋ ହସ ପରିହାସରେ ବୁଡ଼ି

ଯାଇଥିଲି । କିଛି କ୍ଷଣ ପରେ ଶିଅକର ଶୋଇ ପଡ଼ି ଘୁଙ୍ଗୁଡ଼ି ମାରିଲି । ମୋର ବି ନିଦ୍ରା ଆସିଥିଲା । ଏତିକି ବେଳେ କିଏ ମୋ ଉପରକୁ ଖଣ୍ଡିଏ କମ୍ବଳ ଫିଙ୍ଗିଦେଲା । ମୁଁ ଅଧମୁଦା ଆଖିରେ ଦେଖିଲି, ସେହି ମହିଳା ଝରକା କଡ଼ରେ ବସି ତନ୍ମୟ ହୋଇ ନୌକାଉପର ଶାନ୍ତ ଆକାଶରେ ଶୀତର ନୀଳ ରଙ୍ଗ ଦେଖୁଛି । ମୋ ଉପରକୁ କମ୍ବଳ ଫିଙ୍ଗିଦେବା ଭିତରେ ମୁଁ ତାହାର ଏକ କାମନା ବର୍ଜିତ ମମତାର ସ୍ପର୍ଶ ପାଇଲି । ମୁଁ ଆଖି ମୁଦି ପଡ଼ି ରହିଲି । ମୋର ସର୍ବାଙ୍ଗରେ ପ୍ରେମ ଓ ବାସନାର ତରଙ୍ଗ ଖେଳିଗଲା ।

ସେହି ଦିନରୁ ଶିଅକରର ସ୍ତ୍ରୀର ଆନ୍ତରିକ ଅପୂର୍ବ ମାଧୁରୀ ମୋତେ ଦୁର୍ବାର ବେଗରେ ଟାଣିବାକୁ ଲାଗିଲା । ପ୍ରକୃତ ପ୍ରେମରେ ପରିପୂର୍ଣ୍ଣ ଜଣେ ନାରୀକୁ ମୁଁ ଭଲ ପାଇବାକୁ ଶିଖିଲି । ଖାଲି ଥରେ ଗୁରି ଚକ୍ଷୁର ମିଳନ ଆଶାରେ ମୁଁ ତାହାର ଘରକୁ ଯିବାକୁ ଲାଗିଲି ।

ଆଜି କେବଳ ତୋତେ ଜଣାଉଛି ଯେ ଦିନ ପରେ ଦିନ ତାହାର ସ୍ତ୍ରୀ ସକାଶେ ନିଷ୍ଫଳ କାମନାରେ ମୁଁ ଜଳି ପୋଡ଼ି ମରୁଛି । କିନ୍ତୁ ଗୋଟିଏ କଥା । ତୋ ଭାଇର ଏହି ବ୍ୟର୍ଥ ପ୍ରେମ ତାହାର ମରଣ ପରେ କାହାରି ଦୁଆରେ ପହଞ୍ଚାଇ ଦେବୁ ନାହିଁ । ଆଉ କେହି ବୁଝୁ ବା ନ ବୁଝୁ, ଅନ୍ତତଃ ତୁ ବୁଝିବୁ କି ନିଦାରୁଣ ଯନ୍ତ୍ରଣାରେ ମୋର ଜୀବନ କଟିଛି ।

ଥରେ ସ୍ୱପ୍ନ ଦେଖିଲି, ମୁଁ ତାହାର ସ୍ତ୍ରୀର ହାତ ଧରିଛି । ନିଦ ଭାଙ୍ଗିଲା ପରେ ତାହାର ଆଙ୍ଗୁଳିର ପରଶ ମୋ ହାତରେ ଲାଗିଥିଲା । ମନେ ମନେ ସ୍ୱୀକାର କଲି, ଏତିକି ମାତ୍ର ମୋର ପାଉଣା । ସେହି ନାରୀକୁ ଭୁଲିବା ପାଇଁ ମୁଁ ହୃଦୟରେ ନିଆଁ ଧରି ଉଚ୍ଛୃଙ୍ଖଳତା ଓ କାମନା ଭିତରକୁ ଡେଇଁ ପଡ଼ିଲି । କିନ୍ତୁ କିଛି ଫଳ ହେଲାନାହିଁ । ମୋ ପରି ମଣିଷ କଦାପି ଦୁଇ ଥର ପ୍ରେମରେ ପଡ଼େ ନାହିଁ ।

ମୃତ୍ୟୁ ଅ.ଗରୁ ଥରେ ତାହାର ନାମ ଲେଖିଦେବ —ଶୁଗା ।

କାଲି ଜଣେ ବାଇଜୀକୁ ଏଠାକୁ ଆଣିଛି । ତାହା ପ୍ରତି ମୋର ଟିକେ ହେଲେ ଦୁର୍ବଳତା ନାହିଁ । ଝିଅଟି ଗାଡ଼ିରେ ଚଢ଼ି ବୁଲିବାକୁ ଚାହୁଁଥିଲା । ମୁଁ ବି ଝୋଟକଓ ସହରରେ ଅନାଗ୍ରହରେ କ୍ଳାନ୍ତ ହୋଇ ଦୁଇ ଦିନ ଖଣ୍ଡେ ସେହି ବୋକା ଝିଅଟି ସାଙ୍ଗରେ ଏଠାରେ ଜଡ଼ିତ ହୋଇଯିବି ବୋଲି ଭାବିଥିଲି । ତେବେ ଅବଶ୍ୟ ଭାରି ଖରାପ ଲାଗିଲା । ତୁ ଝୋଟକଓକୁ ଗ୍ଲାଲିଗଲୁ ମାତ୍ରେ ମୋର ମନେ ହେଲା, ଯଦି ମରିବାକୁ ହୁଏ ଏହି ତ ସୁଯୋଗ ଉପସ୍ଥିତ ।

ଆଜ ଅପୂର୍ବ ସୁଯୋଗ ମିଳିଛି । ତୁ ଏଠାରେ ନାହୁଁ । ଜଣେ ବୋକା ନର୍ତ୍ତକୀ ମୋ ଆତ୍ମହତ୍ୟାର ଏକମାତ୍ର ସାକ୍ଷୀ ।

କାଲି ରାତିରେ ଆମେ ଦୁହେଁ ଏକାଠି ବସି ମଦ ଖାଇଲୁ । ତା ପରେ ତାହାକୁ ହୋଟେଲର ଘରେ ଶୋଇବାକୁ ନେଇଗଲି । ମୁଁ ତଳକୁ ଆସି ମାଆ ଯେଉଁ ଘରେ ମରିଥିଲେ ସେଠାରେ ବିଛଣା ବିଛାଇଲି । ତା ପରେ ଏହି ଉଚ୍ଛୃଙ୍ଖଳର କଥା ଲେଖିବାକୁ ବସିଛି ।

କାଜୁକୋ !

ଆଉ ଆଶା ନାହିଁ, ବିଦାୟ ।

କିନ୍ତୁ ଅନ୍ତିମ ବିଶ୍ଳେଷଣରେ ମୋର ମୃତ୍ୟୁ ସ୍ୱାଭାବିକ । କେବଳ ଆଦର୍ଶର ଖାତିରରେ ବଞ୍ଚିବା ଅସମ୍ଭବ । ତେବେ ଗୋଟାଏ ଅନୁରୋଧ କରିବାକୁ ଭାରି ସଙ୍କୋଚ ହେଉଛି । ମନେ ଅଛି ନା, ମାଆଙ୍କର ଖଣ୍ଡିଏ ରେସମର କିମନୋ ଆସନ୍ତା ଗ୍ରୀଷ୍ମରେ ମୋର କାମରେ ଲାଗିବ ବୋଲି ଭାବି ଠିକ୍ କରି ରଖିଥିଲୁ ? ସେହି ଖଣ୍ଡିକ ମୋ କଫିନରେ ଦେବୁ । ସେଟା ପିନ୍ଧିବା ପାଇଁ ମୋର ଖୁବ୍ ଇଚ୍ଛା ଥିଲା ।

ଭୋର ହୋଇ ଆସିଲା ।

ବିଦାୟ !

ଗଲ୍ପ ଭିତର ନଗରର ଅନେକ ସମ୍ପୃକ୍ତି କଟି ଯାଇଛି । ଶେଷ ସମୟରେ ମୁଁ ଶାନ୍ତରେ ମରିବ ।

ପୁଣି ବିଦାୟ ନେଉଛି ।

କାଜୁକୋ ।

ଯାହା ହେଉ ପଛକେ, ମୁଁ ଅଭିଜାତ ।

୮

ଦୁଃସ୍ୱପ୍ନ ।

ଜଣ ଜଣ କରି ସଭିଏଁ ମୋତେ ଛାଡ଼ି ଚାଲିଗଲେ ।

ନାଓଜିର ମୃତ୍ୟୁ ପରେ ମାସେ ମୁଁ ଏକା ଗାଁର ସେହି ଘରେ ଥିଲି ।

ତା ପରେ ଅନ୍ତର ନୈରାଶ୍ୟରେ ହାହାକାର କଲାରୁ, ଉପେ-ହାରକୁ ମୋର ଶେଷ ଚିଠି ଲେଖିଲି—

ମନେ ହେଉଛି, ଆପଣ ବି ମୋତେ ତ୍ୟାଗ କରିଛନ୍ତି । ନା, ବୋଧ ହୁଏ ମୋତେ ଧୀରେ ଧୀରେ ପାଶୋରିବାକୁ ବସିଛନ୍ତି ।

କିନ୍ତୁ ଆଉ କିଛି ଦୁଃଖ ନାହିଁ । ଏତେ ଦିନେ ମୋର ମନ ସାଧ ମେଣ୍ଟିଛି । ମୁଁ ସନ୍ତାନ ସମ୍ଭବା ।

ଏହାକୁ ମୁଁ ବିରାଟ ଭୁଲ ବୋଲି କୌଣସି ମତେ ସ୍ୱୀକାର କରିବ ନାହିଁ । ବର୍ତ୍ତମାନ ମୋ ନିକଟରୁ ଦୁନିଆର ସବୁ କିଛି ବ୍ୟାପାର ଦୂରେଇ ଯାଇଛି । ମୋର ମନେ ହୁଏ, ଆପଣ ଏସବୁ କିଛି ବୁଝନ୍ତି ନାହିଁ । ସେଥି ପାଇଁ ଆପଣ ସଦା ସର୍ବଦା ବିଷଣ୍ଣ । ମୁଁ କହୁଛି କାହିଁକି । ଏସବୁର କାରଣ ହେଉଛି, ଯୁଗେ ଯୁଗେ ନାରୀ ସୁସ୍ଥ ସବଳ ଶିଶୁ ଜନ୍ମ କରିବ ।

ମୂଳରୁ ଆପଣଙ୍କ ଚରିତ୍ର ଓ ଦାମ୍ପତ୍ୟଜ୍ଞାନ ଉପରେ ମୋର ବିଶେଷ ଆସ୍ଥା ନ ଥିଲା । ଏକମାତ୍ର ଉଦ୍ଦେଶ୍ୟ ଥିଲା, ମୋର ଏକ୍ଷ ଏକାଗ୍ର ପ୍ରେମର ଅଭିଯାନରେ ଜୟ ଲାଭ କରିବା । ବର୍ତ୍ତମାନ ମୋର ବାସନା ଚରିତାର୍ଥ ହେବାରୁ, ଗଭୀର ଅରଣ୍ୟରେ ସ୍ତବ୍ଧ ଜଳାଭୂମି ପରି ମୋ ହୃଦୟ ମଧ୍ୟ ପ୍ରଶାନ୍ତିରେ ପରିପୂର୍ଣ୍ଣ ହୋଇଛି ।

ଆଜି ମୋର ଜୟ ହୋଇଛି ।

ମେରି ଯେଉଁ ସନ୍ତାନ ଜନ୍ମ କରିଥିଲେ, ସେ ତାଙ୍କର ସ୍ୱାମୀର ନ ହେଲେ ସୁଦ୍ଧା ଏକମାତ୍ର ମାତୃ ହୃଦୟର ଗର୍ବରେ ମେରି ଓ ତାଙ୍କର ସନ୍ତାନ ଦେବ ମାତା ଓ ଦେବ ଶିଶୁର ଆସନରେ ଅଧିଷ୍ଠିତ ହେଲେ ।

ବିବେକର ସମ୍ପୂର୍ଣ୍ଣ ସମର୍ଥନରେ ମୁଁ ସନାତନ ମତ ଅଗ୍ରାହ୍ୟ କରିଛି । ଫଳରେ, ମୁଁ ଏକ ସୁସ୍ଥ ସନ୍ତାନର ଜନନୀ ହେବାରେ ପରି-ତୃପ୍ତି ପାଇବି ।

ଆଶା କରେ, ଆମର ଶେଷ ଦେଖା ପରେ ବି ଆପଣ ପୂର୍ବ ପରି ନର ନାରୀ ପରିବେଷ୍ଟିତ ହୋଇ ସୁରାର ବନ୍ୟାର ଭିତର ଦେଇ ଅବକ୍ଷୟର ପଥରେ ଚାଲିଛନ୍ତି ।

"ମଦ ଛାଡ଼ି ଦିଅନ୍ତୁ, ନିଜ ସ୍ୱାସ୍ଥ୍ୟ ପ୍ରତି ନଜର ଦିଅନ୍ତୁ, ଦୀର୍ଘାୟୁ ହୁଅନ୍ତୁ, ଆପଣଙ୍କର ଅପୂର୍ବ ଶିଳ୍ପ ସମୃଦ୍ଧ ଜୀବନର ସମ୍ଭାବନା ପୂର୍ଣ୍ଣ କରନ୍ତୁ ।" ଏପରି କିଛି ଭଣ୍ଡ ଅନୁରୋଧ କରିବାକୁ ମୋର ଆଦୌ ଇଚ୍ଛା ନାହିଁ । ଯେତେ ଦୂର ମନେ ହୁଏ, ଆଗାମୀ ଦିନର ମଣିଷ ଆପଣଙ୍କୁ ଅପୂର୍ବ ସମୃଦ୍ଧ ଜୀବନ ପାଇଁ ନୁହେଁ, ନିଜର ନିରବ-ଚ୍ଛିନ୍ନ ବ୍ୟଭିଚାରିତା ପାଇଁ ଅଧିକ ମନେ ରଖିବ ।

ତେଣୁ ଆମେ ଦୁହେଁ ଯୁଗସନ୍ଧିର ମିତବୋଧର ବଳି ।

ପୃଥିବୀରେ କେଉଁଠି ନିଶ୍ଚୟ ବିପ୍ଳବ ଚାଲିଛି । କିନ୍ତୁ ପୁରୁଣା କାଳିଆ ମାଞ୍ଚି ଜ୍ଞାନ ଆଜି ମଧ୍ୟ ଅବ୍ୟାହତ ଅବସ୍ଥାରେ ଆମ ଚତୁ-ର୍ଦ୍ଦିଗରେ ରହିଛି ଏବଂ ଆମ ପଥ ଆଗୁଳାଇ ବସିଛି । ସମୁଦ୍ର ଉପରେ ତରଙ୍ଗ ଯେତେ ଉତ୍ତାଳ ହେଉ ପଛକେ, ତାହା'ର ଆଘାତ ସମୁଦ୍ରର ତଳ ଭାଗରେ ପହଞ୍ଚେ ନାହିଁ । ସେଠାରେ ନିଦ୍ରା'ର ଛଳନା କରି ଜଳଧି ନିଃଶବ୍ଦରେ କାଳର ପଦ ଧ୍ୱନି ଶୁଣେ ।

କିନ୍ତୁ ମୋର ଏହି ପ୍ରଥମ ପ୍ରଣୟ ଦ୍ୱାରାହିଁ ମୁଁ ବୋଧ ହୁଏ ପ୍ରାଚୀନ ବିଧି ନିଷେଧର ପ୍ରାଚୀର ଉଲ୍ଲଙ୍ଘନ କରି ପାରିଛି । ମୋ ଭାବୀ ସନ୍ତାନର ହାତ ଧରି ଦୀକ୍ଷିତ ଓ ଦୃଢ଼ିତ ଯୁଦ୍ଧରେ ଅଗ୍ରସର ହେବ ।

ଯାହାକୁ ଭଲ ପାଏ, ତାହାର ସନ୍ତାନର ଜନନୀ ହେବା ଏବଂ ତାହାକୁ ମଣିଷ କରିବାହିଁ ହେବ ମୋର ନୈତିକ ଅଭିଯାନର ସାର୍ଥକ ପରିଣତି ।

ଯଦି ଆପଣ ମୋତେ ପାଶୋରି ପକାନ୍ତି ଏବଂ ମଦର ପଙ୍କରେ ବୁଡ଼ିଯାଇ ଆପଣଙ୍କର ମୃତ୍ୟୁ ହୁଏ, ତାହା ହେଲେ ମୋର ମନେ ହୁଏ, ମୁଁ ସୁସ୍ଥ ସବଳ ଶରୀରରେ ବଞ୍ଚି ରହି ପାରିବି । କାରଣ ମୋର ବିଦ୍ରୋହ ସାର୍ଥକ ହୋଇଛି ।

କିଛି ଦିନ ତଳେ ମୁଁ ଜଣେ ଲୋକ ଠାରୁ ଆପଣଙ୍କର ଚାରିତ୍ରିକ ଅପଦାର୍ଥତା ସମ୍ବନ୍ଧରେ ଅବହିତ ହୋଇଛି । ଯାହା ହେଉ ଆପଣ ମୋତେ ଯଥେଷ୍ଟ ଶକ୍ତି ଦେଇଛନ୍ତି, ମୋ ଅନ୍ତରରେ ବିଦ୍ରୋହର ଇନ୍ଦ୍ରଧନୁ ଆଙ୍କିଛନ୍ତି ଏବଂ ମୋତେ ବଞ୍ଚି ରହିବାର ପ୍ରେରଣା ମଧ୍ୟ ଯୋଗାଇଛନ୍ତି ।

ଆପଣଙ୍କ ସମ୍ବନ୍ଧରେ ମୋ ମନରେ ଯେଉଁ ଗର୍ବ ଅଛି, ତାହାର ବୀଜ ମୁଁ ମୋ ସନ୍ତାନ ଭିତରେ ବପନ କରିବି ।

ଜାରଜ ସନ୍ତାନ ଓ ତାହାର ମାଆ !

ସୂର୍ଯ୍ୟଙ୍କ ପରି ପ୍ରାଚୀନ କୁସଂସ୍କାର ବିରୁଦ୍ଧରେ ଆମରି ଲଢ଼େଇ ଚାଲିବ ।

ଆପଣ ମଧ୍ୟ ନିଜର ସଂଗ୍ରାମ ଚଳାଇବାର ଚେଷ୍ଟା କରନ୍ତୁ ।

ଏହି ବିପ୍ଳବ ଏକ୍ଷଣି ଢେର୍ ଢେର ଅଛି । ଏଥି ପାଇଁ ଆହୁରି ଅନେକ ଅମୂଲ୍ୟ ପ୍ରାଣର ବଳିଦାନ ଲୋଡ଼ା ।

ସଂସାରରେ ବଳି ହେବା ଭଳି ସୁନ୍ଦର କଥା କିଛି ନାହିଁ ।

ଆଉ ଗୋଟିଏ ତୁଚ୍ଛ ବଳି ହେଲି ।

ଉପେନ୍ଦ୍ରଶ୍ୱର୍, ଆପଣଙ୍କ ନିକଟରେ ମୋର ଆଉ କିଛି କାମ୍ୟ ନାହିଁ । କିନ୍ତୁ ଏହି କ୍ଷୁଦ୍ର ପ୍ରାଣଟି ତରଫରୁ ଆପଣଙ୍କ ନିକଟରେ ଏକମାତ୍ର ଅନୁଗ୍ରହ ଭିକ୍ଷା କରୁଛି ।

ମୁଁ ଚାହେଁ, ମୋ ସନ୍ତାନକୁ ଆପଣଙ୍କ ସ୍ତ୍ରୀ ଅନ୍ତତଃ ଥରେ କୋଳରେ ଧରିବେ, ଆଉ ମୁଁ ତାହାଙ୍କୁ କହିବି —"ନାଓଜି ଏହି ପିଲାଟିକୁ ପାଇଛି କୌଣସି ଏକ ନାରୀ ସହିତ ଗୋପନ ମିଳନର ଫଳରେ ।"

କାହିଁକି ଏମିତି କରିବ ? ଏହାର କାରଣ ମୁଁ କାହାକୁ କହି ପାରିବ ନାହିଁ । କିନ୍ତୁ ଦୟା କରି ଏତିକି ଆପଣଙ୍କୁ କରିବାକୁ ହେବ ।

ଜଣେ ପରିତ୍ୟକ୍ତା ନାରୀ, ଯେ ସ୍ୱତରୁ ଦୂରେଇ ଯାଇଛି, ଏହାହିଁ ତାହାର ଏକମାତ୍ର ଅପରାଧ ।

ମୋ କଥା ନିଶ୍ଚୟ ରଖିବେ ।

# ସୁନ୍ଦରୀ ଆସମାନ ଦାସ ଉତ୍ତମଚନ୍ଦାନୀ

## ରେଖା

୧

ଦୀପକର ଶେଷ ଚିଠି— ବାବା, ଦୋକାନର ସବୁ ଜିନିଷପତ୍ର ନିଲାମରେ ଉଠିବାକୁ ବାକି ଅଛି । ବଜାରରେ ସମସ୍ତଙ୍କ ଠାରୁ ଧାର କରଜ କରି ବସି ରହିଛି । ପାଉଣାଦାରମାନେ ତାଗଦା ଉପରେ ତାଗଦା କରି ମୋତେ ବ୍ୟତିବ୍ୟସ୍ତ କରି ପକାଉଛନ୍ତି । ଏହି ପରି-ସ୍ଥିତିରେ କାରବାର ଗୋଟାଇ ନେଇ ପଳାଇବା ଛଡା ଆଉ କିଛି ବାଟ ଖୋଜି ପାଉ ନାହିଁ ।

ଗୋପାଳଦାସ ବିଦେଶରେ ଅନେକ ବର୍ଷ ଦୋକାନ ଚଳାଇ ବାକି ଜୀବନଟା ଶାନ୍ତିରେ କଟାଇବା ପାଇଁ ପୁଅର ହାତରେ ଦୋକାନର ଭାର ଦେଇ ଗାଁକୁ ଫେରି ଆସିଛି । ଦୀପକର ଯୋଗ୍ୟତା ଉପରେ ତାହାର ତିଳେ ମାତ୍ର ସନ୍ଦେହ ନ ଥିଲା । କିନ୍ତୁ ଦୀପକର ଦୋକାନରେ ବସିବାର ପାଞ୍ଚ ବର୍ଷ ଭିତରେ ସବୁ ଓଲଟ ପାଲଟ ହୋଇଗଲା ।

ବ୍ୟବସାୟ ବନ୍ଦ କରିଦେବାର ଖବର ପାଇଲା ଦିନରୁ ଗୋପାଳ ଦାସର ବୟସ ସତେ ଯେମିତି ହୁହୁ ବଢ଼ିଗଲା । ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ବିକି ଦେଇ ପନ୍ଦର କୋଡ଼ିଏ ହଜାର ଟଙ୍କା ଖରଚ କରି ଜାକଜମକରେ ବଡ଼ ଝିଅ ଶୀଳବନ୍ତୀର ବିବାହ କରିଦେଲା ।

ବର୍ତ୍ତମାନ ଗୋପାଳ ଦାସ ଭଡ଼ା ଘରେ ଅଛି । ତାହା ସାଙ୍ଗରେ ଅଛନ୍ତି ସ୍ତ୍ରୀ ରୁକ୍ମଣୀ, ଝିଅ ରେଖା ଏବଂ ଗୋଟିଏ ନାତି । ଯେଉଁ ଆତ୍ମୀୟ ସ୍ୱଜନମାନେ ଅତୀତରେ ଦିନ ପରେ ଦିନ ଏମାନଙ୍କ ଘରେ କଟାଇ ଦେଉଥିଲେ, ସେମାନେ ଏକ୍ଷଣି ଆଉ ଚିହ୍ନି ପାରନ୍ତି ନାହିଁ ।

ରେଖା ବି ବଡ଼ ହୋଇଛି । ଆଜି କି କାଲି ତାହାର ବିଭାଘର କରିବା ଦରକାର । ଘାପଜ ଯେ କୁଆଡ଼େ ପଳାଇଲା, ତାହାର କିଛି ପତ୍ତା ନାହିଁ । ଏହି ସବୁ ବିଷୟ ଗମ୍ଭୀର ଭାବରେ ଚିନ୍ତା କରି ରେଖାର ମାଆ ଉଦ୍‌ବିଗ୍ନ ହୋଇ ପଡ଼ୁଥିଲା ।

ରେଖା ଚମତ୍କାର ବୀଣା ବଜାଏ । ତାହାର ବାପ ମାଆ ଅନେକ ସମୟ ଯାଏ ତାହା ପାଖରେ ବସି ସେହି ମଧୁର ବାଜଣା ଶୁଣନ୍ତି । ସେମାନେ ନିଜ ମନର କରୁଣ ସ୍ୱର ସହିତ ବୀଣାର ସ୍ୱରର ମେଳ ଖୋଜି ପାଆନ୍ତି ।

ଗୋପାଳ ଦାସର ପାରିବାରିକ ଅବସ୍ଥା ଏପରି ଥିଲା ବେଳେ ଦେଶ-ବିଭାଜନର ପର୍ବ ଆରମ୍ଭ ହେଲା । ନାନା ରକମ ଖବର ଶୁଣି ବାପ-ମାଆ ରେଖାର କୋମଳ ସୁନ୍ଦର ଚେହେରା ପ୍ରତି ଦୃଷ୍ଟି ଦେଇ ଅଜଣା ଆଶଙ୍କାରେ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ପ୍ରତିବେଶୀ ଓ ଆତ୍ମୀୟ ସ୍ୱଜନମାନଙ୍କ ଠାରୁ ରୁକ୍ମଣୀ ଝିଅ ରେଖାର ସୌନ୍ଦର୍ଯ୍ୟ ସମ୍ବନ୍ଧରେ ପ୍ରଶଂସା ଶୁଣିଛି । ତାହାର ନାକ, ମୁଖ, ଆଖି ଏକାବେଳେ ନିଖୁଣ । ବର୍ତ୍ତମାନ ରେଖା ତ ପରିପୂର୍ଣ୍ଣ ଯୌବନର ଆଧାର । ତାହାର ରୂପ ଲାବଣ୍ୟ ଆହୁରି ଫୁଟିଉଠୁଛି । ସ୍ୱାଭାବିକ ଅବସ୍ଥାରେ ଝିଅ ବଡ଼ ହେଲେ ବାପ-ମାଆଙ୍କର ଦୁଶ୍ଚିନ୍ତାର ସୀମା ନ ଥାଏ । ତାହା ଉପରେ ଦେଶର ଏହି ଚରମ ଆଶଙ୍କାଜନକ ପରିସ୍ଥିତିର ମୁହୂର୍ତ୍ତରେ ଦୁର୍ଭାବନା ଆହୁରି ବଢ଼ିଯିବା ସ୍ୱାଭାବିକ ।

ଦିନେ ଗୋପାଳ ଦାସର ବଡ଼ ଭଉଣୀ ଆସି କହିଲା— ଗୋପାଳ, ପାପକ ଲାଗି ତୋହର ବ୍ୟବସାୟ ନଷ୍ଟ ହୋଇ ଯାଇଥିଲେ ସୁଦ୍ଧା ଏବେ ବି ତୋ ହାତରେ ଯେତିକ ଟଙ୍କା ଅଛି ସେଥିରେ ଯେ କୌଣସି ସମୟରେ ତୁ ଅନ୍ୟ କେଉଁଠାକୁ ଯାଇ କିଛି ଉପାୟ କରି ଖାଇ ପାରିବୁ । ମାତ୍ର ମୋ ଅବସ୍ଥା ତ ଆଉ କହିବାର କଥା ନୁହେଁ — ଗୋଟେ ଛୁଆ ପିଲା ଧରି ଅନ୍ୟ କେଉଠାକୁ ଯିବାକୁ ଚାହିଲେ ବି ଖାଲି ଗାଡ଼ି ଭଡ଼ା ପ୍ରାୟ ଦୁଇ ଶହ ଟଙ୍କା ଲାଗିବ ।

ଗୋପାଳ ଦାସ କହିଲା— ଅପା, ତୁ ତ ଅନ୍ତତଃ ଗୋଟାଏ ବ୍ୟାପାରରେ ନିଶ୍ଚିନ୍ତ, ତୋ ଝିଅମାନେ ସମସ୍ତେ ସାନ ସାନ । ଏଣେ ମୋ ରେଖା ପାଇଁ ତାହାର ମାଆର ଆଖିକୁ କେବେ ନିଦ ଆସୁନାହିଁ । ତୁ ଯାହା ଭାବୁଛୁ, ମୋ ପାଖରେ ଏତେ ଟଙ୍କା ନାହିଁ । ତେବେ ହଁ, ରେଖାର ବିବାହ ପାଇଁ କେତେ ହଜାର ଟଙ୍କା ଉଠାଇ ରଖିଛି । ଯାହା ହେଉ, ଦରକାର ହେଲେ ତୋତେ ଦୁଇଶହ ଖଣ୍ଡେ ଟଙ୍କା ଦେଇ ପାରେ ।

— ସତରେ ବଞ୍ଚିଗଲି । କି ଦୁଶ୍ଚିନ୍ତାରେ ଯେ ପଡ଼ିଥିଲି । ଭଲ କଥା, ଯଦି କିଛି ମନେ ନ କରୁ ତୋତେ ଗୋଟାଏ କଥା କହିବି ।

— ଏତେ ସଙ୍କୋଚ କରିବାର କଅଣ ଅଛି, ଅପା ! ମୋ ଝିଅ ଠାରୁ ବି ତୋତେ ଅଧିକ ନିଜର ମନେ କରେ । ନିଃସଙ୍କୋଚରେ ତୋ କଥା କହି ପାରୁ ।

— ଗୋଟାଏ କାମ କର । ମୋ ଦେବରାଣୀର ଦିଅରର ପୁଅ ସାଙ୍ଗରେ ରେଖାର ବିବାହ ଦେ । ପିଲାଟି ଦେଖିବାକୁ ଭାରି ଭଲ, ନମ୍ର ବ୍ୟବହାର, କଲେଜରେ ତିନି ତିନିଟା ପାଶ କରିଛି, ରୋଜଗାର ବି ମନ୍ଦ ନୁହେଁ । ଯୌତୁକର କିଛି ଝମେଲା ନାହିଁ । ସେମାନଙ୍କ

ଘରର ଲୋକେ ଏକ୍ଷଣି ଲୁଣ ପାଣି ପିଇ ଭଲ ପାତ୍ରର ସନ୍ଧାନରେ ଲାଗି ପଡ଼ିଛନ୍ତି । ତାଙ୍କାଙ୍କ ଘରର ବଡ଼ ବୋହୂ କୁଆଡ଼େ ଅନେକ ଦିନ ହେଲା ବାପ ଘରେ ଯାଇ ରହିଛି । ତେଣୁ ଘର ସଂସାରର କାମ ଦାମରେ ଭାରି ଅସୁବିଧା ହେଉଛି ।

ଏତେ ବେଳଯାଏ ରୁକ୍ମଣୀ ଦରଜାର ଆଡ଼ୁଆଳରେ ଛିଡ଼ା ହୋଇଥିଲା । ନଣନ୍ଦ ଚାଲିଯିବା ସଙ୍ଗେ ସଙ୍ଗେ ରୁକ୍ମଣୀ ବଡ଼ ପାଟିରେ ନିଜର ସିଦ୍ଧାନ୍ତ ଘୋଷଣା କଲା— ଏମିତି କାଙ୍ଗାଳ ଘରେ ମୁଁ ତ ରେଖାକୁ କେବେ ହେଲେ ଦେବ ନାହିଁ ।

ଦିନେ ଜଣେ ପଡ଼ୋଶୀର ଘରେ ଢେର୍ ବେଳ ଯାଏ କଥା ବାର୍ତ୍ତା କରି ଫେରି ଆସି ରୁକ୍ମଣୀ ସ୍ୱାମୀକୁ ଜଣାଇଲା— ଯାହା କୁହ ପଛକେ, ଏଠାରେ ଆଉ ଦଣ୍ଡେ ରହିବାକୁ ମୋ ମନ ଟେକୁ ନାହିଁ । ସମସ୍ତେ ଜମିବାଡ଼ି ଘରଦ୍ୱାର ଛାଡ଼ି ଚାଲି ଯାଉଛନ୍ତି । ଏହି ଦରବୁଢ଼ୀ ଝିଅଟାକୁ ନେଇ କଅଣ କରିବି କିଛି ଭାବି ପାରୁ ନାହିଁ । ଅଥଚ ଏକ୍ଷଣି ଏଠାରେ ରହିବା ମଧ୍ୟ ନିରାପଦ ନୁହେଁ । ପାତ୍ରର ସନ୍ଧାନ ନେଲ ? ଶୁଣିଲି, ଶୀତଳ ଦାସର ଘରେ ଗୋଟିଏ ଉତ୍ତମ ପାତ୍ର ଅଛି ।

ଗୋପାଳ ଦାସ କହିଲା— ସେ ତ ଅଛି ସତ । ମାତ୍ର ସେ ଯେ କୋଡ଼ିଏ ହଜାର ଟଙ୍କା ଦାବୀ କରିବ । ମୋ ପାଖରେ ଏକ୍ଷଣି କୋଡ଼ିଏ ଶହ ଟଙ୍କା ବି ନାହିଁ ।

— ଯେତେ ବେଳେ ଟଙ୍କା ଥିଲା ସେତେ ବେଳେ ତ ପରବାଏ କଲ ନାହିଁ । ଏକ୍ଷଣି ମରମେ ମରମେ ବୁଝ ।

ରୁକ୍ମଣୀ ଅହରହ ଝିଅର ବିବାହର ଚିନ୍ତା କରିବାକୁ ଲାଗିଲା । ଘରେ ଗୋଟାଏ କୋଣରେ ବସି ସେ ପ୍ରାୟ ଆଖିରୁ ଲୁହ ଢାଳେ । ଦିନେ ରାତିରେ ସେ ସ୍ୱାମୀକୁ ପଚାରିଲା— ଆଚ୍ଛା, ତୁମ

ଅପା ଯେଉଁ ପାନଟିର କଥା କହୁଥିଲ ଯଦି ତାହା ସତ୍ୟ ବିବାହ ଠିକ୍ ହୁଏ, ରେଖା ଅରାଜି ହେବ ନାହିଁ ତ ?

ସେ କଥା ନିଜେ ରେଖାକୁ ପଚାରିଲେ ଭଲ ହୁଅନ୍ତା—ଗୋପାଳ ଦାସର ହାତରେ ରୁକ୍ମିଣୀର ଆଖିର ଲୁହ ପଡ଼ିଲା । ସେ ଚମକି ପଡ଼ି କହିଲ— ଆରେ, ଏ କଅଣ ? ତୁମର ମଥା ଖରାପ ହେଲା ନା କଅଣ ! କାନ୍ଦୁଛ କାହିଁକି ! ଦେଖ, ଏସବୁ କଥାରେ ଯାହାର କପାଳରେ ଯାହା ଅଛି, ନିଶ୍ଚୟ ତାହା ହେବ । ଯଦି ରେଖାର କପାଳରେ ସେୟା ଥାଏ—।

– ତାହାକୁ ଆଉ କଅଣ ପଚାରିବ ? ଏତେ ଯତ୍ନରେ ତାହାକୁ ଏଯାଏ ଫୁଲ ପରି ବଢ଼ାଇ ଶେଷରେ ଆଜି ତାହାକୁ କଣ୍ଟାବଣକୁ ଠେଲି ଦେବ !

—ମାଆ, ମୁଁ ଅରାଜି ହେବି ନାହିଁ ।

ବାପ-ମାଆ ବିସ୍ମିତ ହେଲେ । ଏ ଯେ ରେଖାର କଣ୍ଠ ସ୍ୱର ।

ଗୋପାଳ ଦାସ କହିଲ—କିଏ, ମା ରେଖା ? ଆ, ମା, ଭିତରକୁ ଆ ।

ବର୍ତ୍ତମାନ ରେଖା ମୁହଁରେ ପଦେ କଥା କହିଦେଲା ସିନା, ମାତ୍ର ଦରଜାକୁ ଆଉଜି କାଇଁ କାଇଁ କାନ୍ଦିଲା ।

ଏକ ସପ୍ତାହ କଟିଗଲା । ବିବାହର ସବୁ ଆୟୋଜନ ପ୍ରାୟ ସରିଲଣି । ବିବାହ ଦିନ ସକାଳେ ନିଦ ଭାଙ୍ଗିଲାରୁ ରେଖାର ମନେ ହେଲା, ସତେ ଯେମିତି ସମୁଦାୟ ପୂର୍ବାକାଶ ନିଆଁ ପରି ଜଳୁଛି । ରାତିରେ ବହୁତ କଥା ଭାବି ଭାବି କେତେ ବେଳେ ଯେ ସେ ଶୋଇ ପଡ଼ିଥିଲା ତାହାର ଖିଆଲ ନ ଥିଲା । କଅଣ ସବୁ ଯେ ସେ ଭାବୁଛି, ତାହା ବି ତାହାର ମନେ ପଡ଼ିଲା ନାହିଁ ।

ସକାଳ ହେଉ ନ ହେଉଣୁ ଇନ୍ଦିରା, ଶୀଳା ଓ ଗୋପୀ ପହଞ୍ଚି ଗଲେ । ସେମାନେ ସମସ୍ତେ ରେଖାର ମାଉସୀ ଝିଅ ଭଉଣୀ । ବିବାହ ଦିନ ରେଖା ସହିତ ଥଟ୍ଟା ତାମସା କରିବା ପାଇଁ ସେମାନେ ଆସିଛନ୍ତି । କେତେ ଘଣ୍ଟା ପରେ ରେଖା ଲକ୍ଷ୍ୟ କଲା ଯେ ଘରର ସମସ୍ତଙ୍କ ମୁହଁରେ ଗୋଟାଏ କେମିତିକା ଦୁଶ୍ଚିନ୍ତାର ଛାଇ ପଡ଼ିଛି ।

ରେଖା ଉଠି ଯାଇ ମାଆଙ୍କୁ ପଚାରିଲା— ମା'ଆ, ତୁମେ ସବୁ ଏମିତି ଚୁପ୍‌ଚାପ୍ ବସିଛ କାହିଁକି ? କଅଣ ହୋଇଛି ?

ରୁକ୍ମଣୀ ଝିଅର ମୁଣ୍ଡରେ ହାତ ବୁଲାଉଁ ବୁଲାଉଁ କହିଲା— ସେମିତି କିଛି ହୋଇ ନାହିଁ, ମାଆ । ଖାଲି ଏମିତି ।

— ମୋ ମୁଣ୍ଡ ଖାଇବୁ, କହ, କିଛି ଗୋଟାଏ ହୋଇଛି ନିଶ୍ଚୟ ।

— କାଲି ରାତିରେ ଗୋଟାଏ ଖରାପ ଖବର ମିଳିଲା । ସେଥି ପାଇଁ ଆମର ବଡ଼ ଚିନ୍ତା ।

ମାଆର ବେକ ଜାବୁଡ଼ି ଧରି ରେଖା ପଚାରିଲା— କି ଖରାପ ଖବର, ମାଆ, କୁହ ନା ।

ପଣତ କାନରେ ଆଖି ପୋଛୁ ପୋଛୁ ରୁକ୍ମଣୀ କହିଲା— ରାତିରେ ହରିରାମ ତୋ ବାପା ପାଖକୁ ଆସିଥିଲା । ଦେଖିଛୁ ତ ? ଭଦ୍ରଲୋକ ତୋ ବଡ଼ ମାଆର ଆତ୍ମୀୟ । ସେ କହିଲା, ଚନ୍ଦନ କୁଆଡ଼େ ମାସରେ ଖୁବ ବେଶୀ ହେଲେ ଅଶୀ ଟଙ୍କା ମାତ୍ର ରୋଜଗାର କରେ । ଘରର ଅବସ୍ଥା ଏତେ ଖରାପ ଯେ ମଝିରେ ମଝିରେ ବଡ଼ ବୋହୂ ଦୁଇ ଓଳି ଠିକ୍ ଭାବରେ ଖାଇବାକୁ ପାଇଲା ନାହିଁ ବୋଲି ବାପ ଘରକୁ ଚାଲିଗଲା ।

ରେଖା କିଛି କ୍ଷଣ ନୀରବ ରହି ହଠାତ୍ ଏକ ଚଞ୍ଚଳା ବାଳିକା ପରି କହି ପକାଇଲା—ଏଇଟା ଏମିତି କି ମାରି ହାଣ ଖବର ଯେ ଘରର ସମସ୍ତେ ମୁହଁ ଓଲାଇ ବସି ରହିଛ !

ଝିଅର ସହଜ ସରଳ କଥା ଶୁଣି ରୁକ୍ମଣୀ କହିଲା—ମୁଁ ଯେ ତୋତେ ଫୁଲ ପରି ଯତ୍ନ କରି ଏତେ ବଡ଼ କରିଛି । ଏସବୁ ଜାଣି ଶୁଣି କିପରି ମୁଁ ତୋତେ ସେମାନଙ୍କ ହାତରେ ସମର୍ପି ଦେବି କହିଲୁ ? ଏ ବିବାହରେ ଯେ ମୁଁ ମୂଳରୁ ଅରାଜି ଥିଲି ।

ରେଖା ଚମକି ପଡ଼ିଲା । ତାହାର ବାପ ତାହା ପାଖରେ ଛିଡ଼ା ହୋଇଥିଲା । ଗୋପାଳ ଦାସ ଘରେ ଗୋଡ଼ ଦେଲା ବେଳେ ନିଜ ସ୍ତ୍ରୀର ଶେଷ କଥା ପଦକ ତାହାର କାନରେ ବାଜିଲା । ସେ ସ୍ତ୍ରୀକୁ କହିଲା—ଆରେ ପାଗଳ ହେଲ ନା କଅଣ ? ସେହି ଖବରଟା ପାଇଛି ବୋଲି କଅଣ ଆଜି ବିବାହ ଦିନରେ ସବୁ ଭାଙ୍ଗି ଭୁଙ୍ଗି ଦେବି ? ଯେଉଁ ଦିନ ପକ୍‌କା ଜବାବ ଦେଲି, ଧରି ନେବାକୁ ହେବ ଯେ ସେହି ଦିନହିଁ ଝିଅର ବିବାହ ହୋଇ ଯାଇଛି । କପାଳରେ ଯାହା ଅଛି ନିଶ୍ଚୟ ତାହା ହେବ । ତୁମର ବୁଝିବା ଉଚିତ ଯେ ବର୍ତ୍ତମାନ ଆମର ଆର୍ଥିକ ଅବସ୍ଥା ଖୁବ୍ ଭଲ ନୁହେଁ । ତାହା ଛଡ଼ା ବିନା ପଣରେ ତାହା ଠାରୁ ଭଲ ପରିବାରର ପାତ୍ର ବା କେଉଁଠି ମିଳିବ ?

ରୁକ୍ମଣୀ କିଛି କହିଲା ନାହିଁ । ଖାଲି ମୁଣ୍ଡ ତଳକୁ ପୋତି ବସି ରହି ସେ ଭୂଇଁରେ ନଖର ଗାର କାଟିବାକୁ ଲାଗିଲା ।

## ୨

ମଧୁଶଯ୍ୟା ରାତି । ଦୁଇ ଚାରି ପଦ କଥା ପରେ ଚନ୍ଦନ କହିଲା—ଚାଲ ।

ନା, ମୁଁ ଅନ୍ୟ ବିଛଣାରେ ଶୋଇବି— ରେଖା ହାତ ଛଡ଼ାଇ ନେଲା ।

ଚନ୍ଦନ ହସି ହସି କହିଲା—ତୁମେ ଯେ କେଡ଼େ ଅଭାଗିନୀ, ତାହା ତ ତୁମେ ନିଜେ ଜାଣ ନାହିଁ । ଏ ଘରେ ଆଉ ଗୋଟିଏ ବିଛଣା କରିବାକୁ ଯେ ମୋଟେ ଜାଗା ନାହିଁ !

ରେଖା ସ୍ୱାମୀର ଏହି ସହଜ ସରଳ ଅଥଚ ବାସ୍ତବ କଥା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହେଲା ! ସେ ନିଜର ବାନ୍ଧବୀମାନଙ୍କ ଠାରୁ ମଧୁଶଯ୍ୟା ରାତ୍ରି ସମ୍ବନ୍ଧରେ ଅନେକ ଗପ ଶୁଣିଥିଲା । ତେଣୁ ସେ ଭାବିଥିଲା, ସ୍ୱାମୀ ନିଜେ ତାହାର ହାତ ଧରି ବିଛଣାରେ ଶୁଆଇବେ ଏବଂ ଚୁମ୍ବନରେ ତାହାର ସର୍ବାଙ୍ଗ ଭରିଦେବେ ।

କିନ୍ତୁ ରେଖାର ସେହି ଅନୁମାନ ଖାଲି କଳ୍ପନାରେ ରହିଗଲା । ସେହି ରାତିରେ ସେମାନଙ୍କ ଭିତରେ କେତେ ରକମ କଥାବାର୍ତ୍ତା ହେଲା । କଥା ପ୍ରସଙ୍ଗରେ ରେଖା କହିଲା— ମୋ ମତରେ, ଦାମ୍ପତ୍ୟ ଜୀବନରେ ଗଭୀର ପ୍ରେମ ସଞ୍ଚାର କରିବା ସଭିଙ୍କ ଜୀବନର ଲକ୍ଷ୍ୟ ହେବା ଉଚିତ ।

ଚନ୍ଦନ କହିଲା— କିନ୍ତୁ ମୋ ମତରେ, ଦେଶବାସୀଙ୍କର ସେବାହିଁ ଜୀବନର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ।

ଢେର୍ ରାତି ଯାଏ କଥାବାର୍ତ୍ତା, ଆଲିଙ୍ଗନ, ଇତ୍ୟାଦି ପରେ ଦୁହିଁଙ୍କୁ କେତେବେଳେ ଯେ ନିଦ ଲାଗିଲା ସେମାନଙ୍କୁ ମାଲୁମ ହେଲା ନାହିଁ ।

ସକାଳେ ନିଦ ଭାଙ୍ଗିଲାରୁ ରେଖାର ମନେ ହେଲା, ଯେମିତି ରାତି ସାରା ସେ ଦୁଃସ୍ୱପ୍ନ ଦେଖୁଥିଲା । ଯେମିତି ତାହାର ସର୍ବାଙ୍ଗରେ ଗୋଟାଏ ବ୍ୟଥା ମାଲୁମ ହେଲା । ଝରକା ଖୋଲି ଦେବାରୁ ସୂର୍ଯ୍ୟ କିରଣ ଆସି ସେମାନଙ୍କ ବିଛଣାରେ ପଡ଼ିଲା । ମଧୁଶଯ୍ୟାରେ ସେତେ

ଫୁଲ ନ ଥିଲି । ରେଖାର ନଜର ଯାଇ ପଡ଼ିଲା ଲୁଣି ଧରା କାନ୍ଥ ଉପରେ । କବାଟ ଖୋଲିଦେଲା ମାତ୍ରେ ସେ ଦେଖିଲି, କୋଡ଼ିଏ ବର୍ଷର ଜଣେ ଯୁବତୀ ଦାନ୍ତ ଘଷୁଛି । ରେଖାକୁ ଘରୁ ବାହାରିବାର ଦେଖି ସେ ତାହାକୁ ଟାଣି ନେଇ ଦୋତାଲାରେ ଯାଇ ବସିଲି । ଦୁହିଙ୍କର ନୟନରେ ଦୁଷ୍ଟାମୀ ପରସ୍କାର ଇଙ୍ଗିତ ଫୁଟିଲି । କମଳା ଭାବୁଥିଲା, ମୋ ଜୀବନରେ କଅଣ ଏମିତିକା ଦିନ ଆସିବ ନାହିଁ ? ଅନ୍ୟ ପକ୍ଷରେ ରେଖା ଭାବୁଥିଲା, ସଂସାରର ସବୁ ଲୋକେ ଗଲା ରାତିକୁ ଏକାବେଳେ ଭୁଲି ଯାଆନ୍ତୁ । ମୁଁ ଯେ ବିବାହିତା, ସେହି ସ୍ମୃତି ସମସ୍ତଙ୍କ ମନରୁ ଲିଭି ଯାଉ । ମୁଁ ଫେରିଯାଏ ମୋ ବାପ ଘରକୁ । କିନ୍ତୁ ଦୁହେଁ ଅସମର୍ଥ । କମଳାର ବାବା ଗରିବ, ଆଉ ରେଖାର ତ ବିବାହ ହୋଇ ଯାଇଛି ।

ତିନି ଦିନ ଭିତରେ ରେଖା ଓ କମଳା ମଧ୍ୟରେ ଶ୍ରଦ୍ଧା ଗଭୀର-ତର ହେଲା । ସତେ ଯେମିତି ଉଭୟଙ୍କର ଅସହାୟ ଭାବକୁ ଭୁଲି ଯିବାର ଏହା ଏକ ଉତ୍ତମ ମାଧ୍ୟମ ।

ଚତୁର୍ଥ ଦିନ କମଳା ରେଖା ପାଖକୁ ଆସି କହିଲା—ପିଇସୀ, ହୁଏତ ଆଜି ଭାଇ ମୋତେ ନେଇଯିବାକୁ ଆସିବେ । ସତକୁ ସତ ସେହି ଦିନ କମଳା ଚାଲିଗଲା । ଘରର ବଡ଼ ବୋହୂ ମଧ୍ୟ ସେହି ଦିନ ଦିପହରେ କଜିଆ କରି ତାହାର ବାପ ଘରକୁ ଚାଲିଗଲା । ଘଟଣା ସେମିତି କିଛି ଗୁରୁତର ନୁହେଁ । ତେବେ ଗୋଟାଏ ଛଳନାରେ ଝଗଡ଼ାର ସୂତ୍ରପାତ ହେଲା । ରେଖାର ଶାଶୁ ଖରାରେ ଗହମ ଦେଇ ନିଜେ ଜଗି ବସିଥିଲି । ବୁଢ଼ୀ ଖରା ପୋହୁଁଥିଲି ।

ସର୍ଦ୍ଦି ହୋଇ ନ ଥିଲା, ଅଥଚ ଗୋଲାପର ସ୍ତ୍ରୀ ପିଲାଟିକୁ ଗରମ ପାଣିରେ ଗାଧୋଇ ଦେଉଥିଲା । ହଠାତ୍ କିଛି ପାଣି ସେହି ଗରମ ଉପରେ ଛିଟିକି ପଡ଼ିଲା । ଗୋଲାପର ମାଆ କହିଲା— ଦେଖ, ଟିକିଏ

ଘୁଞ୍ଚି ଯାଇ ପିଲାକୁ ଗାଧୋଇ ଦେ । ପିଲାକୁ ତ ସର୍ଦ୍ଦି କାଶ ହୋଇ ନାହିଁ ଯେ ଗରମ ପାଣିରେ ଗାଧୋଇ ଦେବାକୁ ହେବ !

— ସେ କଥା ତ ବୁଝିଲି, ମାଆ । କିନ୍ତୁ ଆପଣଙ୍କୁ ତ ସର୍ଦ୍ଦି ହୋଇ ନାହିଁ, ତଥାପି ଖରାରେ ବସିଛନ୍ତି କାହିଁକି । ପିଲାମାନଙ୍କର ତ ବରାବର ଟିକିଏ ସର୍ଦ୍ଦି ଲାଗିଥାଏ ।

ଠିକ୍ ସେତିକି ବେଳେ ରେଖା ଖଣ୍ଡିଏ ଝକଝକିଆ ନୂଆ ଶାଢ଼ୀ ପିନ୍ଧି ସଜବାଜ ହୋଇ ଅଗଣାରେ ଶାଶୁ ପାଖକୁ ଆସି ଠିଆ ହେଲା । ଦେଖି ତ ବୁଢ଼ୀକୁ ରାଗରେ ପାଚି ଯାଇଥିଲା । ରେଖା ଯେ ପଛରେ ଆସି ଠିଆ ହୋଇଛି, ତାହା ସେ ଲକ୍ଷ୍ୟ କରି ନ ଥିଲା । ହଠାତ୍ ସବୁ ପାଣି ଏକା ଥରେ ସେ ପିଲାଟିର ଉପରେ ଢାଳି ଦେଲା । ପାଣିର କେତେଟା ଛିଟା ଯାଇ ରେଖାର ଶାଢ଼ୀ ଉପରେ ପଡ଼ିଲା । ଯେଉଁ ଘରକୁ ସେ ମାସ ତିନି ଦିନ ହେଲା ଆସିଛି, ସେଠାରେ ସେ ବା ଆଉ କଅଣ କହିବ ! ତେବେ ତତ୍କ୍ଷଣାତ୍ ତାହାର ମୁଖ ଶୁଖି ଗଲା । ବଡ଼ ବୋହୂର କାଣ୍ଡ ଦେଖି ଶାଶୁ ଚଟି ଗଲେ ସୁଦ୍ଧା ଉପରେ ରାଗ ପ୍ରକାଶ କଲେ ନାହିଁ । ରେଖା ତାହାଙ୍କୁ ପ୍ରଣାମ କଲାରୁ ସେ କହିଲେ— ହେଉ ମାଆ, ଭଗବାନ ତୋର ମଙ୍ଗଳ କରନ୍ତୁ । ହଁ, ସେଠାରେ ବେଶୀ ବେଳ ଯାଏ ରହିବୁ ନାହିଁ, ଖାଲି ଯିବୁ ଆସିବୁ ।

ରେଖା ମୁଣ୍ଡ ହଲାଇ ଚାଲିଗଲା । ଶାଶୁ ବୁଢ଼ୀ ତାହାର ଯିବା ବାଟ ଆଡ଼କୁ ଅନାଇ କହିଲା— ଝିଅଟା କେତେ ମନସ୍ୱୀ । ଏମିତି ଝକଝକିଆ ନୂଆ ଶାଢ଼ୀରେ ପାଣି ପଡ଼ି ଏକାବେଳେ ଖରାପ ହୋଇଗଲା । ତଥାପି ସେ ତୁଣ୍ଡ ଫିଟାଇ ପଦିଏ ହେଲେ କଥା କହିଲା ନାହିଁ ।

ବଡ଼ ବୋହୂର ରାଗର ନିଆଁରେ ଯେମିତି ଘିଅ ପଡ଼ିଲା । ଗଲା ତିନି ଚାରି ଦିନ ହେଲା ସେ ଶାଶୁର ମୁଖରେ ଅହରହ ସାନ

ବୋହୂର ରୂପର ପ୍ରଶଂସା ଶୁଣି ଆସୁଥିଲା । କଥା କଥାକେ ସେ ତାହାର ସୌନ୍ଦର୍ଯ୍ୟ ସହିତ ଅନ୍ୟର ତୁଳନା କରୁଥିଲା । ଆଉ ସମ୍ଭାଳି ନ ପାରି ସେ କହିଲା— ଏତେ ଯେ କହୁଛ ମାଆ, ସେଇଥିପାଇଁ ଛୋଟ ଛୋଟ କଥାରେ କଅଣ କେହି କେବେ ଝଗଡ଼ା କରେ !

ବୁଢ଼ୀ ତାହାର ମନୋଭାବ ବୁଝି ପାରି କହିଲା— ମୁଁ ତ ତୋତେ କହୁ ନାହିଁ, ବୋହୂ । ଆଉ ଯଦି ବା କହିଥାଏଁ, ତାହା ହେଲେ ସେଥିରେ କି ଦୋଷ ହେଲା ? ବସ୍ତୁଟି ବାହାରିଲା ବେଳେ ତାହାର ନୂଆ ଶାଢ଼ୀଟା ଖରାପ ହୋଇଗଲା, ସେ ମନରେ କିଛି ଭାବବ ନାହିଁ ! ତାହାର ମନ ତ ନିଶ୍ଚୟ କଷ୍ଟ ହେବ ।

ଦେବୀ ଶାଶୁଙ୍କ ପ୍ରତ୍ୟେକ ଶବ୍ଦ ଉପରେ ଜୋର ଦେଇ କହିଲା— ତାହା ତ ସତ, ମାଆ । ତେବେ ମୋର କହିବାର କଥା, ଯେଉଁ ବୋହୂ ବାପ ଘରୁ କିଛି ନେଇ ଆସିଥାଏ ତାହାର ମନ ଦୁଃଖ କରିବା ସାଜେ । ଯେ କିଛି ହେଲେ ଆଣି ନାହିଁ, ସେ ଫେର୍ କେଉଁଥିପାଇଁ ଦୁଃଖ କରିବ !

— ଦିଅା ନିଅା କଥାରେ ତୋର ଏତେ ମଥା ଖେଳାଇବା କି ଦରକାର ! ଭଗବାନ ମୋ ଚନ୍ଦନର କପାଳରେ ଯାହା ଲେଖିଛନ୍ତି ତାହା ହେବ ।

ଦେବୀ ଈର୍ଷାରେ ଜଳି ଯାଇ କହି ପକାଇଲା— ତାହା ଅବଶ୍ୟ ସତ । ମାତ୍ର ମୋ ମୁହଁ ଦେଖିବା ସଙ୍ଗେ ସଙ୍ଗେ ଏକା ଅନେକଙ୍କର କପାଳ ଫାଟି ଯାଏ । ମୁଁ ତ ଖାଲି ବାପ ଘରୁ ଆସିବାକୁ ଖୁସି ନ ଥିଲି । ମୁଁ ଆପଣଙ୍କୁ ହାତେ ହାତେ ଚହିଛି । ତଥାପି ମୋ ବାପ ଘରକୁ ଯାଇ ଆପଣ ଖୋସାମଦ କଲେ, ଅନ୍ତତଃ ଏହି ବଡ଼ଘରରେ ଟିକିଏ ଦେଖାଶୁଣା କରିବା ପାଇଁ ଯେ କୌଣସି ମତେ ଆସିବ । ଏଣିକି ବଡ଼ଘର ସରିଗଲା, ମୋତେ କଅଣ ଏଣିକି ଏହି ଘରେ ଆଉ

ରହିବାକୁ ଦେବେ ! ମାଆ ସିନା ମୋତେ ଠିକ୍ କଥା କହିଥିଲା । ହେଉ, ଚାଲ ସୁନ୍ଦର, ଜାମାପଞ୍ଜା ପିନ୍ଧି ପକା, ତୋ ମାମୁଁ ଘରକୁ ଯିବା ।

ସନ୍ଧ୍ୟା ବେଳେ ରେଖା ବାପ ଘରୁ ଫେରି ଆସି ଦେଖିଲା, ଦେବୀ ନାହିଁ, ବାପ ଘରକୁ ଚାଲି ଯାଇଛି ।

ଚନ୍ଦନ ନିଆଁରେ ହାତ ଗରମ କରୁଁ କରୁଁ ପଚାରିଲା— ମାଆ, ଭାଉଜ ଏମିତି ତରବରରେ ଚାଲି ଗଲେ କାହିଁକି ?

ମାଆ ସବୁ ଘଟଣା ଜଣାଇଲା । ଶେଷରେ ସେ କ୍ଷୋଭ ସହକାରେ କହିଲା—ଜାଣେ ନା, ଏହି ରାକ୍ଷସୀଟା କୁଆଡୁ ଆସି ଗୋଲପର କାନ୍ଧରେ ସବାର ହୋଇଛି !

—ଭାଇଙ୍କର ତ ଏହି ଭାଉଜ ଦରକାର ନ ଥିଲା । ଦରକାର ଥିଲା ପାଞ୍ଚହଜାର ଟଙ୍କା ।

— ଦେଖ ଚନ୍ଦନ, ସେମିତି ଭାବରେ ଟଙ୍କା ଯୋଗାଡ଼ ନ କରିଥିଲେ ସେ ସାତ ସମୁଦ୍ର ତେର ନଦୀ ପାରି ହୋଇ ପାରି ନ ଥାଆନ୍ତା । ସେଥିପାଇଁ ନ କରିଥିଲେ ଆଜି ସେ ଯେତେ ଟଙ୍କା ରୋଜଗାର କରୁଛି ତାହା ଆଉ ହୋଇ ନ ଥାନ୍ତା । ତେଣୁ ଭାବ ଶାନ୍ତ ସେ ଏହି ଦରପୋଡ଼ା କାଠଟାକୁ ବାଧ୍ୟ ହୋଇଛି । ଯାହା ହେଉ ପଛେ ଆଜି ଯାଏ ତୋ ଭାଉଜର ବାପ ଘରୁ କିଛି ନା କିଛି ଜିନିଷ ଆସୁଛି ।

ରେଖା ସେମାନଙ୍କୁ ପରିବେଷଣ କରୁ କରୁ ଏହିସବୁ କଥା ଶୁଣି ମନେ ମନେ ଭାବିଲା ଯେ ଗୋଲପ ଅର୍ଥାତ୍ ତାହାର ଦେଢ଼ଶୁର ନିଶ୍ଚୟ ଖୁବ ଭଲ ମଣିଷ ନୁହେଁ । ଯେ ଖାଲି ଟଙ୍କା ଲାଗି ବାଧ୍ୟ ହୁଏ, ସେ ଆଉ ଯାହା ହେଉ ନା କାହିଁକି ଆଦୌ ଭଲ ଲୋକ ନୁହେଁ । କିନ୍ତୁ ତାହାର ଫଟ ଆଡ଼କୁ ଅନାଇଲେ ତ ମାଲୁମ ହୁଏ ନାହିଁ ସେ

ସତରେ ଲୋକଟା ଖରାପ। ସୁନ୍ଦର ହସ ହସ ମୁଖ । ରେଖାକୁ ଗୋଲାପର ଫୁଟ ଭଲ ଲାଗେ।

ଚନ୍ଦନ କହି ମକାଇଲା— ମାଆ, ଦେଖୁଛ ପାଞ୍ଚ ମିନିଟ ଭିତରେ ତୁ ଘରର ଯାବତୀୟ କଥା କହି ଦେଲୁ। ଏସବୁ ଶୁଣି ମୁଁ କ ପାଇବ !

— ଯଦି ଏକ୍ଷଣି ସଂସାରକ ବ୍ୟାପାରରେ ମନ ନ ଦେଉ, କପର ଚଳବୁ ! ଯେମିତ ତୁ ସଂସାରୀ ହେବୁ, ଘରେ ତୋର ମନ ବସିବ, ସେଇଥି ପାଇଁ ତ ତୋତେ ବାଘ୍ର ଦେଲ ।

ଚନ୍ଦନ ଦୀର୍ଘ ନିଶ୍ୱାସ ପକାଇ କହିଲା— ତାହା ତ ମୁଁ ଜାଣି ନ ଥିଲି, ମାଆ। ମୋ ଜୀବନର ଧାରା ବଦଳାଇବା ପାଇଁ ମୋର ବିବାହର ବ୍ୟବସ୍ଥା କରିଛ ବୋଲି ଜାଣି ପାରିଥିଲେ ମୁଁ କଦାପି ରାଜି ହୋଇ ନଥାଆନ୍ତି। କିନ୍ତୁ, ତଥାପି କହୁଛି, ମୋତେ ସଂସାରର କାମରେ ଜଡ଼ାଇ ପାରିବ ନାହିଁ। ଅବଶ୍ୟ ଆଗନ୍ତୁକଙ୍କୁ ଜଡ଼ାଇ ପାରୁ।

ରେଖା ଆପଣା କଥା ଭାବୁଁ ଭାବୁଁ ଦର ଆଡ଼କୁ ଆଗୋଉ ଥିଲା। ତାହାର ଗୁଇ କ୍ରମେ କ୍ରମେ ତାହା ଆଗରୁ ଅନ୍ଧାରରେ ଅପସରି ଗଲା।

ଖାଇଲା ବେଳେ ରେଖା ଭାବିଲା, ମାତ୍ର ଏହି ତିନି ଦିନରେ ତାହାର ଜୀବନରେ ଗୋଟାଏ କେଡେ ବଡ଼ ପରିବର୍ତ୍ତନ ହୋଇ ଯାଇଛି— ଏ ଘର ଆଉ ସେ ଘର ଭିତରେ ଗୋଟାଏ କେଡେ ବଡ଼ ପ୍ରଭେଦ। ସେ ଘରର ଉଚ୍ଚ ଶିଖରରୁ ଲୋକେ ଦ୍ରୁତ ଗତିରେ ତଳେ ପଡ଼ି ଯାଉଛନ୍ତି, ଆଉ ଏ ଘରର ଲୋକେ ଉପରକୁ ଉଠିବାର ସ୍ୱପ୍ନ ଦେଖୁଛନ୍ତି । ଆମ ଘରର ଲୋକେ ବି ତ ସ୍ୱପ୍ନ ଦେଖୁଛନ୍ତି। କିନ୍ତୁ ସେମାନଙ୍କର ଓ ସେମାନଙ୍କ ସ୍ୱପ୍ନ ଦେଖିବା

ଭିତରେ ଯେମିତି ଗୋଟାଏ ବିରାଟ ପାର୍ଥକ୍ୟ ରହିଛି । ଶାଶୁ ଭାବୁଛି, ତାହାର ପ୍ରତ୍ୟେକ ପୁଅ ବଡ଼ ବଡ଼ ଚାକିରି କରିବେ, ମୋଟା ଦରମା ଆସିବ ଏବଂ ଘରେ ଚାକର ଚାକରାଣୀ ରହିବେ । ବାସନକୁସନ ସବୁ ରୂପାର ହେବ, ଆଉ ଗୃହାର ସରଞ୍ଜାମ ହେବ ସୁନ୍ଦର କାରିଗରି ଚୀନା ମାଟିର ପାତ୍ର ।

ମାଆ କହିଲା— ଚନ୍ଦନ, ଆମର ଆଉ ଏଠାରେ ରହିବା ଚଳିବ ନାହିଁ, ବାବା ! ଘର ଆଜି ଯାହା ଅବସ୍ଥା ଦେଖୁଛି, ସେଥିରେ ପ୍ରତି ମୁହୂର୍ତ୍ତରେ ମୋର ଭୟ ହେଉଛି ।

ନନ୍ଦନକୁ ଅନ୍ୟମନସ୍କ ରହିବାର ଦେଖି ମାଆ ପୁଣି କହିଲା— ତୋର ଲାଗି ଏମିତିକା ଫୁଲ ପରି ସୁନ୍ଦର ବୋହୂ ଆଣିଛି । ତଥାପି ତୋ ମନ କେଉଁଠି ଯେ ପଡ଼ିଥାଏ, ଆଉ ତୁ ଯେ କଅଣ ଭାବୁଥାଉ, ମୁଁ ତାହା ବୁଝି ପାରେ ନାହିଁ, ବାବା ।

ଚନ୍ଦନ ରେଖାର ମୁହଁ ଆଡ଼କୁ ଅନାଇଲା । ଚାରି ଆଖି ଏକ ହେବାରୁ, ରେଖା ଯେମିତି ଲାଜରେ ସଢିଗଲା । ଚନ୍ଦନ କହିଲା— ମାଆ, ସୁବାସହୀନ ସୁନ୍ଦର ଫୁଲ ପାଇ କି ଲାଭ ! କେତେ ବା ଆନନ୍ଦ ପାଇବ ସେହି ଫୁଲ ପାଇ ! ଛାଡ଼ ସେ କଥା । ଶୁଣ ମାଆ, ଏ ଦେଶ ଛାଡ଼ି ଯିବା ପାଇଁ ମୋ ମନ ଡାକୁ ନାହିଁ । ଏକ୍ଷଣି ଆଉ ଯାହା ହେଉ ନା କାହିଁକି, ଅଶୀ ଟଙ୍କା ଦରମାରେ ତ ଖଣ୍ଡିଏ ଚାକିରି ରହିଛି, ଆଉ ଆମ ନିଜର ଖଣ୍ଡିଏ ଘର ଅଛି । ଏସବୁ ଛାଡ଼ିଛୁଡ଼ି ଚାଲି ଗଲେ ଆଉ କେଉଁଠି ପୁଣି ତାହା ପାଇବା !

ମାଆ କଅଣ ଗୋଟାଏ କଥା କହିବାକୁ ଯାଉଥିଲା । କିନ୍ତୁ ଆର୍ଥିକ ଅସ୍ୱଚ୍ଛଳତାର କଥା ମନେ ପଡ଼ିବାରୁ ସେ ରହି ଗଲା ।

ଭୋଜନ ପରେ ଯେଝେ ଯେଝାର ଘରକୁ ଚାଲିଗଲେ । ରେଖା ଶାଶୁର ଗୋଡ଼ ଘଷିବାକୁ ବସିଲା । ନିଦ ମାଡ଼ିବାରୁ ଯାଇ ସେ ଶୋଇବାକୁ ଉଠିଗଲା ।

ସକାଳେ ଚନ୍ଦନ ଗୃହକର୍ଷୀକୁ ବାହାରି ଯାଏ । ଦିନ ସାରା ରେଖା ତାହାର ଶାଶୁ ଓ ଦୁଇଟି ସାନ ସାନ ଦିଅରଙ୍କୁ ନେଇ ରହିଥାଏ । ସେମାନଙ୍କର ନାମ ହେଉଛି ଗୋପ ଓ ଶ୍ୟାମ । ସେମାନେ ଦିନ ସାରା ଭାଉଜ ସାଙ୍ଗରେ ଖେଳାଖେଳି କରିବାକୁ ଭଲ ପାଆନ୍ତି । ରେଖା ବି ସେମାନଙ୍କ ସହିତ ଠିକ୍ ଭାବରେ ମିଳି ମିଶି ଚଳେ ।

ଆଜିକାଲି ଘରର ଯାବତୀୟ କାମ ରେଖା ନିଜ ହାତରେ କରେ । ପ୍ରଥମ ଅବସ୍ଥାରେ ତାହାର ରୂପ ଲାବଣ୍ୟର ଯେଉଁ ପ୍ରଶଂସା ହେଉଥିଲା, କେତେ ଦିନ ଯାଉ ନ ଯାଉଣୁ ତାହା କମିଗଲା । ସେହି ଆଦର ଆଉ ନାହିଁ । ଘରେ କେଉଁଠି କଅଣ ଅଛି ସେସବୁ ତାହାର ନଖ ଦର୍ପଣରେ । ପ୍ରାୟ ଦିନ ସାରା ତାହାକୁ ଘରର ନାନା କାମଦାମ ଭିତରେ ବୁଡି ରହିବାକୁ ହୁଏ ।

ଦିନେ ରାତିରେ ସେ ଗୋଡ଼ ଘଷିଲା ବେଳେ ଶାଶୁ କହିଲା— ବୁଝିଲୁ ସାନ ବୋହୂ, ସେହି ଗାନ୍ଧୁଙ୍କ ଘରେ କିଛି ବସନ କୁସନ ନ ଥିଲା । କିନ୍ତୁ ସେହି ଘରର ବୋହୂମାନେ ବାପ ଘରୁ ବାସନ କୁସନ ଠାରୁ ଆରମ୍ଭ କରି ବାକ୍ସ ପେଟରା ଓ ଖଟ ପଲଙ୍କ ଏତେ ଆଣିଛନ୍ତି ଯେ ତାଙ୍କର ଘର ଏବେ ପୂରି ଯାଇଛି ।

ଗୋଡ଼ ଘଷୁଁ ଘଷୁଁ ରେଖା ସେସବୁ କଥା ଶୁଣେ ଏବଂ ହସେ । ତାହାର ଇଚ୍ଛା ହୁଏ ଶାଶୁକୁ କହି ଦିଅନ୍ତା, ଗାନ୍ଧୁର ମାଆ ତ ଆଉ ମୋ ପରି ସୁନ୍ଦରୀ ବୋହୂ ପାଇ ନାହିଁ । ପରମୁହୂର୍ତ୍ତରେ ସେ ଭାବେ, ଏହାଙ୍କ ପାଖରେ ସେ ସବୁ କଥା କହିବା ନିଷ୍ପ୍ରୟୋଜନ ।

ରେଖା ମୁଣ୍ଡ ନୁଆଁଇ କିଛି କଥା ନ କହି ଗୋଡ଼ ଘଷୁଥିଲା । ଶାଶୁ କହିଲା— ବୋହୂ, ହଠାତ୍ 'ତୁ ମୁହଁ ଓଳାଇ

ବସିଛୁ କାହିଁକି ? ମୁଁ ତ ତୋତେ କଟାକ୍ଷ କରି କିଛି କହି ନାହିଁ ।

ରେଖା ଉପରେ ଉପରେ ଟିକିଏ ହସିଲା ସିନା, କିନ୍ତୁ ତାହାର ଅନ୍ତର କାନ୍ଦି ପକାଇଲା ।

ତାହା ହେଲେ ଏ କଥା ପକାଇଲେ କାହିଁକି ମାଆ ?—ମୁହେଁ ମୁହେଁ ଗୋଟାଏ ଜବାବ ଦେଇ ପାରିଥିବାରୁ ରେଖା ମନେ ମନେ ହସିଲା ।

—ଦେଖୁଛି, ତୁ ତ ଭାରି ସିଆଣୀ ଝିଅ ! ବେଶ୍, ଯଦି ମୁଁ ସେପରି କହିଥାଏ, ତାହା ହେଲେ କି ଭୁଲ କଥାଟାଏ ବା କହିଲି ! ପୁଅକୁ ଖୋଇ ପେଇ ଯେ ଏତେ ବଡ଼ କଲି, ତାହା କଅଣ ଏମିତି ସେମିତି କଥା ! ମୋ ପୁଅକୁ ତ ମୁଁ ରାସ୍ତାରୁ ସାଉଣ୍ଟି ଆଣି ନାହିଁ !

ଶାଶୁର ଏମିତିକା ଅଟାଳିଆ କଥା ଶୁଣି ରେଖା ଅବାକ ହୋଇଗଲା ।

ପର ଦିନ ରେଖାର ବାପ ଘରୁ ବହୁତ ଖାଦ୍ୟ ଦ୍ରବ୍ୟ ଆସିଲା । ଯାହା ଦିଆ ହୋଇ ନାହିଁ ସେଇଥି ପାଇଁ ରେଖାର ଶାଶୂ ଗଜର ଗଜର ହେବାକୁ ଲାଗିଲା । କିନ୍ତୁ ଚନ୍ଦନ ସେସବୁ ସମ୍ବନ୍ଧରେ ଆଉ କିଛି କହିବା ଅଶାଳୀନ ବୋଲି ମନେ କଲା ।

୩

ଗୋଧୂଳି ବେଳା । ଅବର ବସୁ ଯାଇଛି । ମାଙ୍ଗୁରମାଣ୍ଟୁଗା ବସ୍ତିର ଅଦୂରରେ ଧାଡ଼ି ଧାଡ଼ି ନଡ଼ିଆ ଗଛ । ତାହାର ପାଖ ଦେଇ ବଡ଼ ରାସ୍ତାଟା ଗ୍ଭଲି ଯାଇଛି । ରାସ୍ତା ଟପି ସମୁଦ୍ର କୂଳରେ ଖଣ୍ଡିଏ ବଡ଼ ପଥର ଉପରେ ବସି ରେଖା ଭାବୁଛି, କେତେ ଦିନ ପରେ ଏହି ଉନ୍ମୁକ୍ତ ଆକାଶ ତଳେ ବସିବାର ଅବକାଶ ସେ ପାଇଛି । ଆଜି

ତାହାର ଘରି ଇଚ୍ଛା ହୋଇଛି, ସେ ଅସ୍ତମାନ ସୂର୍ଯ୍ୟର ଲୀଳା ଖେଳା ଦେଖିବ ।

ଦେଶ ଛାଡ଼ି ଆସିବା ପରଠୁଁ ସେ ଏମିତି ଗୋଟାଏ ସୁଯୋଗ ପାଇ ନ ଥିଲା । ଢେର୍ ଖୋଜା ଖୋଜି ପରେ ମାଣ୍ଡୁଗାଁରେ ଯେଉଁ ଛୋଟ ଛୋଟ ଦୁଇ ବଖରା ଘର ମିଳିଲା ସେଥିରେ ହାଣ୍ଡିଶାଳ କି ପିଣ୍ଡା ନାହିଁ । ଯେଉଁ ରେଖା ହାଇଦ୍ରାବାଦର ପ୍ରକାଣ୍ଡ ଅଟ୍ଟାଳିକାରେ ଏତେ ବଡ଼ ହୋଇଛି, ସେ ଏତେ ଛୋଟ ଘରର କଳ୍ପନା ବି କରି ପାରିଲା ନାହିଁ । ବହୁତ ବେଳ ଯାଏ ସେ ପଥର ଉପରେ ବସି ରହି ଏକ ଦୃଷ୍ଟିରେ ଆକାଶ ଆଡ଼କୁ ଅନାଇ ରହିଲା ।

ଧଇଁ ସଇଁ ହୋଇ ଚନ୍ଦନ ଆସି ପହଞ୍ଚିଲା—ଏ କଅଣ ! ତୁମେ ଶେଷରେ ଏଠାକୁ ଆସିଲ ? ବୁଲିବା ପାଇଁ ତ ତୁମକୁ କେହି ବାରଣ କରି ନାହିଁ । ମାତ୍ର ଘରେ କାହାକୁ ନ କହି ଚାଲି ଆସିଲ କାହିଁକି ? ଆମେ କେତେ ବେଳୁ ତୁମକୁ ଚାରି ଆଡ଼େ ଖୋଜିବାରେ ଲାଗିଛୁ !

ରେଖା କିଛି ଜବାବ ନ ଦେଇ ତୁନି ତାନି ସ୍ୱାମୀକୁ ଅନୁସରଣ କଲା । ଘରେ ଗୋଡ଼ ଦେଉ ନ ଦେଉଣୁ ଶାଶୁ ଗର୍ଜନ କଲେ—କାଲେ, ଘର ତୋତେ କାମୁଡ଼ି ପକାଇଲା କି ! ବାହାରେ ବୁଲିବାର ଏତେ ସଉକ ହେଲା !

ପଣତ ସଜାଡ଼ି ନେଇ ରେଖା କହିଲା— ମାଆ, ଆଜି ଘରେ ମନ ଲାଗିଲା ନାହିଁ । ତେଣୁ ଟିକିଏ ବୁଲିବାକୁ ଚାଲିଗଲି ।

— ଶୁଣ ବୋହୂର କଥା । ଘରେ କୁଆଡ଼େ ତାହାର ମନ ଲାଗିଲା ନାହିଁ । ତାହା ହେଲେ ମନ କଅଣ ସେହି ପଥର ଉପରେ ଲାଗେ, ବୋହୂ ? ଆମେ ଏଣେ ସେହି ସେତିକି ବେଳୁ ନୟାନ୍ତ ହୋଇ ଖୋଜାଖୋଜିରେ ଲାଗିଛୁ । ଶେଷକୁ ଶ୍ୟାମ ଓ ଗୋପ

କହିଲେ, ସେମାନଙ୍କୁ ଘୁଡ଼ି ଉଡ଼ାଇବାକୁ କହି ଦେଇ ଭୂ କୁଆଁଡ଼େ ପଥର ଉପରେ ଯାଇ ବସିଥିଲ ।

ରେଖା ସେଠାରେ ଆଉ ଦଣ୍ଡେ ଠିଆ ହୋଇ ସେସବୁ କଥା ଶୁଣି ପାରିଲା ନାହିଁ । ବିବାହ ପରେ ସେ କେବେ ହେଲେ ନିଜକୁ ଏତେ ପରାଧୀନ ବୋଲି ମନେ କରି ନ ଥିଲା । କୌଣସି ଜଣେ ବନ୍ଧୁ ସହିତ କାମ ଅଛି ବୋଲି କହି ଚନ୍ଦନ ତରବରରେ ଚାଲିଗଲା । ରେଖାକୁ ବିଛଣାରେ ମୁହଁ ମାଡ଼ି ପଡ଼ି ରହି କାନ୍ଦିବାର ଦେଖି ଶାଶୁ କହିଲା— ହାୟରେ, ଏ କି କଥା ! ମୁଁ ଏମିତି କି ମାରି ହାଣ କଥା କହିଲି ଯେ ଭୂ କାନ୍ଦିକାଟି ଏକାକାର ହେଲୁଣି । ଦେଖୁଛି, ଆଜିକାଲିକା ଝିଅ ବୋହୂଙ୍କୁ ଆଉ ପଦେ କଥା କହିବାର ଜୁ ନାହିଁ ।

ସେ ଦିନ ରେଖା ଡେର୍ ରାତି ଯାଏ ଚେଇଁ ରହିଲା । ବିଛଣାରେ ପଡ଼ିରହି ସେ ଶାଶୁର କଥାଗୁଡ଼ାକ ମନେ ମନେ ଗୁଣି ହେବାକୁ ଲାଗିଲା—ଆଜି କାଲିକା ଝିଅ ବୋହୂମାନଙ୍କୁ କଟୁ କଥା ବୁଝାଇବା କାଠିକର ପାଠ । କଅଣ ଗୋଟାଏ ମାରିହାଣ କଥା ମୁଁ କହିଲି ଯେ ଭୂ ସେଥି ପାଇଁ କାନ୍ଦି କାଟି ଏକାକାର ହେଲୁଣି ! ସ୍ୱାମୀକୁ ଦେଖିବା ସଙ୍ଗେ ସଙ୍ଗେ ତାହାର କାନ୍ଦଣା କୁଆଡ଼େ ଉଭେଇ ଗଲା ।

ଚନ୍ଦନ ଏହି କଥା ଯେତେ ଭାବିଲା, ତାହା ପକ୍ଷରେ ସେତେ ବିରକ୍ତିକର ମନେ ହେଲା । ଚନ୍ଦନ ଭାବିଲା, ରେଖା ପ୍ରକୃତରେ କଅଣ ଚାହେଁ । ବମ୍ବାଇରେ ଜୀବନ ଯେ କେତେ କଠିନ ତାହା କଅଣ ସେ ବୁଝି ପାରୁ ନାହିଁ ! ଏଠାରେ ଟିକିଏ ମୁଣ୍ଡ ଗୁଞ୍ଜିବାର ଜାଗା ପାଇବା ମୁସ୍କିଲ । ଏହି ଖୁପରି ଦୁଇ ଖଣ୍ଡ ପାଇଁ ମୋତେ ଦେଢ଼ ହଜାର ଟଙ୍କା ସଲାମୀ ଦେବାକୁ ହୋଇଛି । କେତେ ଉପାୟ କରି ଯାଇ ନସରବାଞ୍ଜି ମିଲରେ ଖଣ୍ଡିଏ ସାଧାରଣ କିରାଣି ଚାକିରି

ହୋଗାଡ଼ ହେଲା । ଜୀବନର ଏହି ସବୁ ବାହ୍ୟ ଦିଗ କିଅଣ ରେଖାର ନଜରରେ ପଡ଼ୁ ନାହିଁ ?

ପାରିବାରିକ ବ୍ୟାପାରରେ ବେଶୀ ସମୟ ଚିନ୍ତା କରିବାର ଅବକାଶ ଚନ୍ଦନର ନ ଥିଲା । ବମ୍ବାଇର ସଂଘର୍ଷମୟ ଜୀବନ ଓ ଜୀବିକା ବିଷୟ ସେ ନିଜର ରାଜନୈତିକ ତଥା ଅର୍ଥନୈତିକ ଚିନ୍ତା ଧାରାର ଆଲୋକରେ ବିଗ୍ଭର କରିବାକୁ ଚେଷ୍ଟା କଲା ।

ମାସ କେତୁଟା ଭିତରେ ମିଲର ଅନେକଙ୍କ ସହିତ ତାହାର ପରିଚୟ ହେଲା । ଅଳ୍ପ ଦିନରେ ସେ ଜନପ୍ରିୟ ହେଲା ଏବଂ କର୍ମଚାରୀ ସମିତିର ସହକାରୀ ସମ୍ପାଦକ ପଦ ପାଇଲା । ତାହାରି ଉଦ୍ୟମରେ ଗୋଟିଏ ପାଠଚକ୍ର ଗଠିତ ହୋଇଛି । ଆଜିକାଲି ସେଠାରେ ନାନା ଧରଣର ଆଲୋଚନା ଚାଲିଛି । ସମସ୍ତେ ଖୁବ୍ ଉତ୍ସାହରେ ଲାଗି ପଡ଼ିଛନ୍ତି ।

ଗଞ୍ଜିର ରାତିରେ ରେଖାର ନିଦ ଭାଙ୍ଗିଗଲା । ତାହାକୁ ଉଠି ପଡ଼ିବାର ଦେଖି ଚନ୍ଦନ ପଚାରିଲା— ମୁଁ ଜଣେ ବନ୍ଧୁର ଘରକୁ ଚାଲିଯିବା ପରେ ତୁମେ ଏତେ କାନ୍ଦୁଥିଲ କାହିଁକି ?

ରେଖା କିଛି ଜବାବ ଦେଲା ନାହିଁ ।

ଚନ୍ଦନ ପୁଣି କହିଲା— ହୁଏତ ଏଠାରେ ତୁମକୁ ଭଲ ଲାଗୁ ନାହିଁ । ଟିକିଏ ହେଲେ ବିଶ୍ରାମ ପାଉ ନାହଁ । ମୁଁ ସୁନ୍ଦର ସୁନ୍ଦର ଶାଢ଼ୀସବୁ ତୁମକୁ କିଣି ଦେଇ ପାରୁ ନାହିଁ ।

ରେଖା ଥରେ ତୀବ୍ର ଦୃଷ୍ଟିରେ ସ୍ୱାମୀ ଆଡ଼କୁ ଅନାଇଲା ।

ଯେଉଁ ଚନ୍ଦନ ସ୍କୁଲ କଲେଜରେ ବିତର୍କ ସଭାରେ ପ୍ରଥମ ହେଉଥିଲା, ଆଜି ହଜାର ହଜାର ଲୋକ ମୁଗ୍ଧ ହୋଇ ଯାହାର ଭାଷଣ ଶୁଣୁଥିଲେ, ତାହା ନିକଟରେ ସ୍ତ୍ରୀର ସେହି ଚାହାଣି ଦୁର୍ବୋଧ୍ୟ ବୋଧ ହେଲା ।

ରେଖା କଡ଼ ଲେଉଟାଇ ଶୋଇ ମନେ ମନେ କାନ୍ଦୁଥିଲା ଏବଂ ଭାବୁଥିଲା— କିଏ ଗୁହିଛନ୍ତି ଏତେ ସୁନ୍ଦର ଶାଢ଼ୀ ! ମୁଁ ତ କେବେ ତାହା ଗୁହିଁ ନାହିଁ ! ସ୍ୱାମୀ ତ ଘରେ ବେଶୀ ବେଳ ରହିବାକୁ ସମୟ ପାଏ ନା । ଯେତେ ସବୁ ମରାଠୀ ଓ ଗୁଜରାଟୀମାନଙ୍କ ସାଙ୍ଗରେ ତାହାର ବନ୍ଧୁତା । ସେମାନଙ୍କ ସାଙ୍ଗରେ ତାହାର ଯେତେ ସବୁ କଥା ! ପ୍ରତିବେଶିନୀ ରାଧାର କଥା ରେଖାର ମନେ ପଡ଼ିଲା । ସେ ଥରେ କହିଥିଲା, ତୁମ ସ୍ୱାମୀ ଜଣେ କେମିତିକା ଲୋକ । ମୁଁ ପ୍ରାୟ ଦେଖେଁ, ସେ ମରାଠୀମାନଙ୍କ ପରି ପେଣ୍ଟ ଓ ଜାମା ସାଙ୍ଗରେ ଚଟି ଜୋତା ପିନ୍ଧନ୍ତି, ଆଉ କାନ୍ଧରେ ଗୋଟାଏ ଥଳିରେ ଗୁଡ଼ାଏ ବହିପତ୍ର ପୂରାଇ ବୁଲୁ ଥାଆନ୍ତି ।

ରେଖା କିଛି ଜବାବ ଦେଲା ନାହିଁ । ରାଧା ରେଖାର ସେହି ଉଦାସ ବିଷଣ୍ଣ ଭାବ ଲକ୍ଷ୍ୟ କଲା ଏବଂ କହିଲା— ମୋ କଥା ଖରାପ ଲାଗିଲା କି, ଭଉଣୀ ? ତୁମେ ଯାହା ଭାବ ପଛକେ, ଲୋକଟା କିନ୍ତୁ ଭାରି ସାଦାସିଧା । ଆଉ ପାଞ୍ଚ ଜଣଙ୍କଠାରୁ ସେ ନିଶ୍ଚୟ ଯଥେଷ୍ଟ ଭଲ । ଯାହା ହେଉ, ତୁମ ସ୍ୱାମୀ ଠାରୁ ତ ଆଉ ଏ କଥା ଶୁଣିବାକୁ ହୁଏ ନାହିଁ ଯେ ଶଶୁର ଘର ଏଟା ଦେଲେ ନାହିଁ ସେଟା ଦେଲେ ନାହିଁ । ଯାହା କୁହ ଭଉଣୀ, ଆଜିକାଲି ସମସ୍ତଙ୍କର ନଜର ଶଶୁର ଘରର ସମ୍ପତ୍ତି ଉପରେ ରହିଛି । ଘରେ କାଣି କଉଡ଼ିଟିଏ ନ ଥାଉ ପଛକେ, ପୁଅର ନାମ କିନ୍ତୁ ହେବ ଧନପତି ।

ରାଧାର କଥାରେ ରେଖା ଟିକିଏ ସାନ୍ତ୍ୱନା ପାଇଥିଲା । ସମୁଦ୍ର କୂଳରେ ବସି ବେଳେ ବେଳେ ସେ ଏହି ଧରଣର ସାନ୍ତ୍ୱନା ପାଏ । ରେଖା ମନେ ମନେ ଭାବେ, ତାହାକୁ କଅଣ ଜୀବନ ଯାକ ଏମିତି ଭାବରେ କଟାଇବାକୁ ହେବ ? ତାହାର ଜୀବନରେ କଅଣ ନୂତନତାର କୌଣସି ଆଭାସ ମିଳିବ ନାହିଁ ? ଅନେକ ସମୟ ଯାଏ

ତାହାଁର ମନର ଆକାଶରେ ହଜାରେ ରକମ ପ୍ରଶ୍ନର ପକ୍ଷୀସବୁ ଉଡ଼ି ବୁଲିଲେ ।

ରେଖା ରାତିର ଶେଷ ପ୍ରହରରେ ଶୋଇ ପଡ଼ିଲା । ସକାଳେ ଟିକିଏ ଉଚ୍ଛୁରରେ ତାହାର ନିଦ ଭାଙ୍ଗିଲା । ନିକଟରେ ମନ୍ଦିରର ଘଣ୍ଟା ବାଜିଲାରୁ, ତାହାର ବାପ ଘର କଥା ମନେପଡ଼ିଲା । ସେଠାରେ ନିତି ଏତିକି ବେଳେ ଗୀତା ପାଠ ହୁଏ । ସେ ଦେଖିଲା, ପାଖ ଘରେ ଚନ୍ଦନ ଓ ଆଉ ଜଣେ ଯୁବକ ଖୁବ୍ ମନ ଦେଇ ଖବର କାଗଜ ପଢ଼ୁଛନ୍ତି । ମୁଖ ଧୋଇ ଦର୍ପଣ ସାମନାରେ ଠିଆ ହୋଇ ସେ ଦେଖିଲା, ତାହାର ଚେହେରା ଭାରି ଫିକା ଦିଶୁଛି । ଚନ୍ଦନ କହିଲା— ମାଆ, ସାରେ ପାଇଁ ବି କପେ ଚାହା ହେବ ।

ରେଖା ଚାହା ଆଣିବାକୁ ଗଲାରୁ ଶାଶୂ କହିଲା — ଏତେବେଳେ ମହାରାଣୀଙ୍କର ନିଦ ଭାଙ୍ଗିଲା ! ଟିକିଏ ଆଖି ଖୋଲି ଦେଖ ନା, କେତେ ବେଳ ଆସି ହେଲାଣି ।

ରେଖା ସଙ୍କୋଚରେ ମୁଣ୍ଡ ନୁଆଁଇ ଚାହା କପ ଉଠାଇ ନେଇ ଚାଲିଗଲା । ସାରେ ସାମନାରେ ଚାହା କପ ରଖିଲା ବେଳେ ତାହାର ମନେ ହେଲା, ସତେ ଯେମିତି ଦୁଇଟା ସକୁତଙ୍କ ଆଖି ତାହା ଉପରେ ନିବଦ୍ଧ ହୋଇଛି । ଯୁବକଟି ଚାଲିଯିବା ସମୟରେ ରେଖା ଲକ୍ଷ୍ୟ କଲା, ତାହାର ଗମନ ଭଙ୍ଗୀ ମନ୍ଦ ଦିଶୁ ନାହିଁ । କିନ୍ତୁ ସେ ପାଦରେ ପୁରୁଣା ଚଟି ପିନ୍ଧିଥିଲା । ରେଖା ମନେ ମନେ ହସି ପକାଇଲା । ଯାହା ହେଉ, ସେ କାହାର ବନ୍ଧୁ, ତାହା ତ ଦେଖିବାକୁ ହେବ ।

## ୪

ଆଜି ଗୋଲପର ମାଆର ମୁଖ ଉଜ୍ଜ୍ୱଳ ଦିଶୁଛି । ଘରର ଚେହେରା ବି ବଦଳି ଯାଇଛି । ଘରେ ଭଲ ଭଲ ଖାଦ୍ୟସବୁ ତିଆରି ହେଉଛି ।

ରାନ୍ଧଣାର ସୁଗନ୍ଧ ପାଖଆଖରେ ମହକୁଛି । ଉପଲକ୍ଷ୍ୟ ହେଉଛି ଗୋଲାପର ଆଗମନ । ରେଖା ଭାବୁଛି, ଦେଢ଼ଶୁରର ସ୍ୱଭାବ କେମିତିକା ହୋଇଥିବ, ତାହାର ହାତର ରାନ୍ଧଣା ପସନ୍ଦ ହେବ କି ନା, ଏବଂ ରାନ୍ଧଣା ଭଲ ହୋଇଥିଲେ ସେ ତାରିଫ କରିବେ କି ।

ତିନିଟା ନୂଆ ଟ୍ରଙ୍କ, ଗୋଟିଏ ରେଡ଼ିଓ ଓ ଛଅ ସାତଟା ଛୋଟ ଛୋଟ ବାକ୍ସ ଟାକ୍ସିରୁ ଓହ୍ଲା ହେଲା । ଗୋଲାପର ଦେହରୁ ଗମଗମ ହୋଇ ବାସ୍ନା ବାହାରୁଥାଏ । ରେଖା ଝରକା ବାଟେ ଦେଢ଼ଶୁରଙ୍କୁ ଥରେ ଦେଖି ନେଲା । ଗୋଲାପର ଦୃଷ୍ଟି ମଧ୍ୟ ତାହା ଉପରେ ପଡ଼ିବା ମାତ୍ରେ ସେ ସେଠାରୁ ତତ୍‌କ୍ଷଣାତ ଘୁଞ୍ଚିଗଲା । ଶ୍ୟାମ ଓ ଗୋପ ହାତ ତାଳି ମାରି ବଡ଼ ପାଟିରେ ଖୁବ୍ ଖୁସିରେ କହୁ ଥାଆନ୍ତି— ମାଆ, ଭାଇ ଆସିଲେ, ବଡ଼ ଭାଇ ଆସିଲେ ।

ମାଆ ଘରୁ ବାହାରି ଆସି ପୁଅର ମୁଣ୍ଡରେ ହାତ ବୁଲାଇଲା । ପର ମୁହୂର୍ତ୍ତରେ ସେ ଥରିଲା ସ୍ୱରରେ କହିଲା— ଯଦି ଆଜି ତୋ ବାବା ବଞ୍ଚି ଥାଆନ୍ତେ, ତାହା ହେଲେ···। ରେଖାକୁ ଇଙ୍ଗିତରେ ପାଖକୁ ଡ଼ାକି ସେ କହିଲା— ଗୋଲାପ, ଏ ହେଉଛି ଆମର ସାନ ବୋହୂ ।

ରେଖା ମୁଣ୍ଡ ନୁଆଁଇଲା ।

ଶାଶୁ ପୁଣି ପଚାରିଲା— ଗୋଲାପ, ଚନ୍ଦନର କପାଳ ତେଜ, ତାହାର ବୋହୂ ସୁନ୍ଦର ନୁହେଁ ? ଗୋଲାପର ମାଆ ଏମିତି ଭାବରେ କହିଲା, ସତେ ଯେମିତି ରେଖା ତାହାର ହାତରେ ତିଆରି ସୁନ୍ଦର ପିତୁଳାଟିଏ । ରେଖା ଆଡ଼ ଆଖିରେ ଲକ୍ଷ୍ୟ କଲା, ଦେଢ଼ଶୁର ତାହା ଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଛନ୍ତି ।

ଇତି ମଧ୍ୟରେ ଏକ ସପ୍ତାହ କଟିଗଲା । ରେଖା ଏକ୍ଷଣି ନିଃସଙ୍କୋଚରେ ଗୋଲାପର ସାମନାରେ ଯାତାୟାତ କରୁଛି । ସେ ଗୋଲାପର

ଲୁଗାପଟା ଆଲଣାରେ ସଜାଡ଼ି ରଖୁଛନ୍ତି, ତାହାର କୋଟ ବ୍ରୁସ୍ କରୁଛନ୍ତି ଏବଂ ତାହାର ରୁମାଲ କାଢ଼ି ଦେଉଛନ୍ତି । ରେଖା ମନେ ମନେ ଭାବୁଛି, ତାହାର ଦେଢଶୁରର ରୁମାଲ କେମିତିକା ବାସୁଛି । ଯଦି ତାହାର ସ୍ୱାମୀ ଏମିତିକା ଅତର ବ୍ୟବହାର କରୁ ଥାଆନ୍ତା···।

—ରେଖା, ଏଠାରେ କଅଣ କରୁଛ ? ଗୋଟାଏ କାମ କର ତ କାଲି ପରି ବେଶ୍ ଗରମ ଗରମ ରୋଟି କେତେ ଖଣ୍ଡ ତିଆରି କର ତ ।

ଗୋଲାପ ବଜାରରୁ ରେଡ଼ିଓ ଆଣିଛନ୍ତି । ସେ ଫେରିଲା ପରଠୁଁ ଝରକାରେ ରେଶମୀ ପରଦା ଟଙ୍ଗା ହୋଇଛି ।

ଗୋଲାପର ମାଆ କହିଲା—ବୁଝିଲୁରେ ଗୋଲାପ, ତୁ ରେଡ଼ିଓଟିଏ ଆଣି ଭଲ କଲୁ । ମୁଁ ମନେ ମନେ ଭାବୁଥିଲି, କେବେ ମୁଁ ଘରେ ବସି ରେଡ଼ିଓରେ ଗୀତ ଶୁଣି ପାରିବି । ଆମ ସାନ ବୋହୂ ତ ଗାଧୁଆ ଘରେ ବସି ଗୀତର ସ୍ୱର ଲହରୀ ଛୁଟାଇ ଦିଏ । ମୁଁ ଦିନେ ତାହାକୁ ବାରଣ କରିଥିଲି ।

ତହୁଁ ଗୋଲାପ ହସି ହସି କହିଲା— ସତେ, ରେଖା ଗୀତ ବୋଲି ପାରେ ? ରେଖା, ଶୁଣ, ଆଜି ତୁମକୁ ଏଠାରେ ଗୀତ ଶୁଣାଇବାକୁ ହେବ ।

ରେଖାର ମନ ଆନନ୍ଦରେ ନାଚିଲା । ସେ ତଳକୁ ମୁହଁ ପୋତି ହସି ପକାଇଲା ।

— ଖାଲି ହସି ଦେଲେ ଚଳିବ ନାହିଁ, ଏକ୍ଷଣି ଗୀତ ଶୁଣାଇବାକୁ ହେବ ।

ତାହାର ମାଆ କହିଲା—ନା ବାବା, ମୁଁ ଏସବୁ ପସନ୍ଦ କରେ ନା । ତୋ ଖୁଡ଼ି ମୋଠାରୁ କେତେ ସାନ । ତଥାପି ତାହାର ବୋହୂ-ମାନେ ତାହାକୁ ଭାରି ଡରି ଡରି ଚଳନ୍ତି ।

ରାତିରେ ଶ୍ୟାମ ଓ ଗୋପ ବେଳାବେଳି ଖାଇ ସାରି ଶୋଇ ପଡ଼ିଲେ । ରେଖା ଶାଶୁ ଓ ଦେଢଶୁରଙ୍କୁ ଖାଇବାକୁ ଦେଇ ମଝିରେ ମଝିରେ ଗୋଟାଏ ସିନେମା ପତ୍ରିକାର ପୃଷ୍ଠା ଲେଉଟାଉଥିଲା ।

ଗୋଲାପ କହିଲା— ବୁଝିଲ ମାଆ, ଯାହାର କପାଳରେ ସୁନ୍ଦରୀ ସ୍ତ୍ରୀ ଜୁଟେ ସେ ହିଁ ପ୍ରକୃତରେ ଭାଗ୍ୟବାନ ।

— ତୋ କପାଳରେ ଯେ ସୁନ୍ଦରୀ ସ୍ତ୍ରୀ ଜୁଟିବ ନ ଥିଲା ତାହା ତ ନୁହେଁ । ତୁ ପରା ନିଜେ କନ୍ୟା ପକ୍ଷର ଲୋକଙ୍କୁ କହିଲୁ, ଝିଅ ଯେମିତିକା ହେଉ ନା କାହିଁକି ମୋର ଟଙ୍କା ବେଶୀ ଲୋଡ଼ା ।

—ମାଆ, ସେତେବେଳେ ଦୁଇନାହାରେ ଗୋଡ଼ ଦେବା କଅଣ ମୋ ପକ୍ଷରେ ଉଚିତ ହୋଇ ଥାଆନ୍ତା ? ସେହି ସମୟରେ ଘରର ଅବସ୍ଥା କଅଣ ଥିଲା ଟିକଏ ଭାବ ଦେଖ । ଆଜି କେତେ ଗୁଣ ବେଶୀ ଟଙ୍କା ନେଇ ମୁଁ ଫେରି ଆସିଛି । ଆଉ ଥରେ ମୁଁ ବିଲାତରୁ ଘୂରି ଆସି ପାରିଲେ, ତୁମେ ସୁନା ଥାଳରେ ଭାତ ଖାଇବ ।

ଠିକ୍ ସେତିକି ବେଳେ ରେଖା ପାଣି ଗିଲାସଟା ରଖୁଁ ରଖୁଁ ଦେଢ଼ଶୁର ଆଡ଼କୁ ଚାହିଁ ଦେଇ ଅବାକ ହେଲା । ତାହାର ମନେ ହେଲା, ଖାଲି ଟଙ୍କା ପାଇଁ ଜଣେ ପ୍ରେମିକ ନିଜର ପ୍ରେମ ବିକ୍ରୀ କରିଛି । ଯଦି ବିଚରାର କପାଳରେ ସୁନ୍ଦରୀ ଗୁଣବତୀ ବୋହୂଟିଏ ଜୁଟି ଥାଆନ୍ତା, ତାହା ହେଲେ ତାହାର ଜୀବନରେ କିଛି ଅବଶୋଷ ନ ଥାଆନ୍ତା ।

ପର ମୁହୂର୍ତ୍ତରେ ଶାଶୁ ବଡ ପାଟିରେ ବୋହୂକୁ ଶୁଣାଇ ଶୁଣାଇ କହିଲା— ସେ କି କଥା କହୁଛୁ, ବାପ । ସମ୍ପତ୍ତି ନ ଆଣିଥିବା ସୁନ୍ଦରୀ ବୋହୂକୁ ଘରକୁ ଆଣି ତ ଦେଖୁଛି, କି ସୁଖ ମିଳୁଛି । ସ୍ୱାମୀକୁ ତ ଦିନ ଯାକ କାରଖାନାରେ ଖଟି ଖଟି ମରିବାକୁ ହେଉଛି ।

ଖାଲି ସୁନ୍ଦରୀ ହୋଇଗଲେ ଯେ ଦୁନିଆରେ ସବୁ କଥା ମିଳି ପାରିବ, ତାହା ଠିକ୍ ନୁହେଁ ।

ଶାଶୁର କଥାଗୁଡ଼ାକ ରେଖାର ମନ ଭିତରେ କଣ୍ଟା ପରି ଫୋଡ଼ି ପକାଉଥିଲି । କିନ୍ତୁ ସେମାନଙ୍କ କଥାରେ ମୁଣ୍ଡ ଖେଳାଇବା ସେ ଉଚିତ ମନେ କଲି ନାହିଁ । ସେଠାରେ ଆଉ ରହି ନ ପାରି ସେ ଝୁରନ୍ତ ତଳକୁ ମୁହଁ ପୋତି ନିଜ କୋଠରୀକୁ ଚାଲିଗଲି ।

୫

ଅଷ୍ଟମୀ ଦିନ । ଗୋଲପର ଘରେ ପଡ଼ାର ପୁଅ-ଝିଅ ସବୁ ଠୁଳ ହୋଇଥିଲେ । ମାଆ ସେମାନଙ୍କୁ ଡାକିଥିଲି, ସବୁ ଛୁଆଙ୍କୁ ମିଠେଇ ଖାଇବାକୁ ଦେବ । ପାରିବାରିକ ଶୁଭ କାମନା କରି ରଚିତ୍ର ଗୀତ-ସବୁ ସେମାନେ ମହା ଆନନ୍ଦରେ ବୋଲୁଥିଲେ ।

ମାଆ କହିଲି— ଗୋଲପ, ଏଥର ତୁ ନିଜେ ପିଲମାନଙ୍କ ହାତରେ ଅଣାଏ ଲେଖାଏଁ ଦେ । ସେମାନେ ଖୁସି ହେଲେ ତ ଆମେ ଆନନ୍ଦିତ ହେବା ।

ଗୋଲପ ସବୁ ପିଲିଙ୍କ ହାତରେ ଅଣାଏ ଲେଖାଏଁ ଦେଉଁ ଦେଉଁ ଅନ୍ୟମନସ୍କ ହୋଇଗଲି । ହଠାତ୍ ନିଜର ସ୍ତ୍ରୀ ଓ ପୁଅର କଥା ତାହାର ମନେ ପଡ଼ିଲି । ତାହାର ସବୁ-ଅଛି, ମାତ୍ର ଏହି ଉତ୍ସବର ଶୁଭ ଦିନରେ ତାହା ପାଖରେ କେହି ନାହାନ୍ତି । ସାଢ଼େ ଛଅ ବର୍ଷ ତଳେ ସେ ସ୍ତ୍ରୀକୁ ଏହି ଘରକୁ ଆଣିଲା ଦିନ ତାହାର ମାଆ ଠିକ୍ ଏମିତି ଏକ ଉତ୍ସବର ଆୟୋଜନ କରିଥିଲା । ସେହି ଦିନ ସେ ପ୍ରତି ପିଲିଙ୍କ ହାତରେ ମାତ୍ର ଗୋଟିଏ ଲେଖାଏଁ ପଇସା ଦେଇ ପାରିଥିଲି ।

ବିଲାତ ଯିବାର ଛଅ ମାସ ଭିତରେ ମାଆ ଠାରୁ ସେ ଖଣ୍ଡିଏ ଚିଠି ପାଇଥିଲି । ସେଥିରେ ମାଆ ଲେଖିଥିଲା— ବାବା ଗୋଲପ, ତୋର ଯିବା ଆଜିକି ଛଅ ମାସ ହେଲି । କିନ୍ତୁ ତୋ ଠାରୁ ଏଯାଏ

ଘଣ୍ଟା ପାଦୁଲଣ୍ଟାଏ ଆସିନ୍ତ ନାହିଁ । ଏଣେ ବୋହୂ ମୋତେ ଶୁଣାଇ ଶୁଣାଇ ଢେର କଡ଼ା କଥା କହୁଛି । ଅଜକାଲିକା ଝିଅ ବୋହୂଙ୍କ କଥା ତୁ କଅଣ ଜାଣୁ ନା ? ପାନରୁ ଚୂନ ଖସିଗଲେ ସେମାନଙ୍କର ଆଉ ରକ୍ଷା ନାହିଁ, ଶାଶୁକୁ ଝିଣି ପକାନ୍ତି । କଥାଟା ବହୁତ ଦୂରକୁ ଗଲାଣି, ବାବା । ଦିନେ ତାହାର ବାପ ଆସି ମୋ ମୁହଁ ଉପରେ କହିଲା—ମୋ ଝିଅକୁ ହୀରା ଜହରତ ଦେଇ ତୁମ ଘରକୁ ପଠାଇ-ଥିଲି । ତୁମେ ତାହାକୁ ଦୁଇବେଳା ମୁଠାଏ ଖାଇବାକୁ ଦେଇ ପାରୁନ ନାହିଁ । କେଉଁଥି ପାଇଁ ହଜାର ହଜାର ଟଙ୍କା ପଣ ଦେଇଛି ? ଘରେରୁ ବଡ଼ ଅଧ ପାଏ ତାହାକୁ ଖଟେଇ ଖଟେଇ ମାରୁଛ, ଅଥଚ ତାହାର ପେଟକୁ ଦୁଇଟା ଦାନା ନାହିଁ । ଝିଅ ମୋର ନ ଖାଇ ନ ପିଇ କଣ୍ଟା ହେଲଣି । ତାହାକୁ ମାରି ଦେବାର ଉଦ୍ୟମ କରୁଛ । ଖୁନ୍ନା କେଉଁଠିକାର ! ଏକ୍ଷଣି ତାହାର କର ମୋର ସେହି ପାଞ୍ଚ ହଜାର ଟଙ୍କା । ନୋହିଲେ ମୁଁ ତୁମକୁ ଜେଲକୁ ପଠାଇବି । ଏମିତି ହେଉ ଜଳା କଥାରେ ମୁଁ ଆଉ ରହି ପାରିଲି ନାହିଁ, ବାବା । ରାଗିଯାଇ କହିଲି—ପଗଳେ, ଖୁନ୍ନା କିଏ ? ଅମେ ନା ତୁମେ ? ଦେଖି ଭଲ, ବଢ଼ ହେଲ୍ ଝିଅକୁ କେତେ ଦିନ ଘରେ ରଖି ପାରିବ । ସଙ୍ଗେ ସଙ୍ଗେ ତୋ ଶଶୁର ତାହାର ଝିଅକୁ ହାତ ଧରି ଟାଣି ଟାଣି ନେଇ କହିଲା—ଚାଲ ମାଆ, ଏଠାରେ ତୋତେ ଆଉ ଦଣ୍ଡେ ହେଲେ ରହିବାକୁ ଦେବି ନାହିଁ । ଦେଖ ମଧ୍ୟ ତତ୍କ୍ଷଣାତ ପାଦତଳର ଚଟି ଗଳାଇ ମୋ ଆଖି ସାମନାରେ ପଟପଟ ହେଇ କରି କରି ଚାଲିଲେ ।

ତିନ ମାସ ପରେ ତାହାର ମାଆ ଠାରୁ ଆଉ ଖଣ୍ଡିଏ ଚିଠି ଆସିଥିଲା—ବାବା, ଗୋଲାପ, ତୁ ପୁଅ ରତ୍ନଟିଏ ପାଇଛୁ । ଦେଖ ଏବେ ବି ବାପ ଘରେ ଅଛି । ଯଦିଚ ଏପାଏ ମୋର ନାତିର ମୁଖ

ଦେଖିବାର ସୌଭାଗ୍ୟ ହୋଇ ନାହିଁ, ତଥାପି ମୋର ନାତି ହୋଇଛି ବୋଲି ଖବର ପାଇ ମୁଁ ଖୁବ୍ ଖୁସି ହୋଇଛି, ବାବା ।

ସେହି ଦିନ ନିଜ ସନ୍ତାନର ମୁଖ ଦେଖିବା ପାଇଁ ଗୋଲପ ଅତିଶୟ ଚଞ୍ଚଳ ହୋଇ ପଡ଼ିଥିଲା । କିନ୍ତୁ ବିଲାତରୁ ସ୍ୱଦେଶକୁ ଫେରି ଆସିବାର କ୍ଷମତା ତାହାର ନ ଥିଲା ।

ରାତିରେ ଶୋଇବାକୁ ଗଲା ବେଳେ ଗୋଲପ ତାହାର ମାଆକୁ ପଚାରିଲା—ମାଆ, ଦେଖା କଅଣ ଚିର ଦିନ ପାଇଁ ତାହାର ବାପ ଘରେ ରହିବ ?

ମାଆ ମର୍ମାହତ ହୋଇ ଜବାବ ଦେଲା— ମୁଁ କେମିତି ସେ କଥା କହି ପାରିବି, ବାବା । ଚନ୍ଦନର ବିବାହ ସମ୍ପର୍କରେ ଏକ ରକମ ତାହାର ହାତ ଓଠ ଧରି ତାହାକୁ ଏ ଘରକୁ ଆଣିଥିଲି । ସେ ଏତେ ଦିନ ଯାଏ ବାପ ଘରେ ନ ଥିଲେ ଚନ୍ଦନର ଆହୁରି ଭଲ ଘରର ଝିଅ ସାଙ୍ଗରେ ବିଭାଘର ହୋଇ ପାରି ଥାଆନ୍ତା । ସେ ଢ ଅନେକ ଟଙ୍କା, ପଣ ଓ ଜିନିଷପତ୍ର ପାଇ ପାରି ଥାଆନ୍ତା । ଭଗବାନଙ୍କୁ ଡ଼ରୁଛି, ବାବା, ଏମିତିକା ବୋହୂ ଯେମିତି କାହାରି ଭାଗ୍ୟରେ ନ ଜୁଟେ । ବାପର ଟଙ୍କା ଅଛି ବୋଲି କୌଣସି ବୋହୂର ଏତେ ଅହଙ୍କାର ରହିବା ଉଚିତ ନୁହେ ।

ଗୋଲପ ଗୁଡି ଫୁଲାଇ କହିଲା— ମୁଁ ବି ତିରିଶ ହଜାର ଟଙ୍କା ଆଣିଛି । ନୂଆ କୋଠାଟିଏ ତିଆରି କଲେ ଦେଖିବୁ, ସେହି ବୋହୂ ଆସି ଫେରି ମୋ ଗୋଡ଼ ଧରିବ ।

ଠିକ୍ ସେତିକବେଳେ ରେଖା ଦୁଧ ଗିଲାସ ନେଇ ସ୍ୱାମୀର ଘରକୁ ଯାଉଥିଲା । ଆଗରୁ ଦେଖା ପ୍ରତି ତାହାର ମନରେ ତୀବ୍ର ଘୃଣା ଥିଲା । ଦେଢଶୁରର ଏହି କଥା ଶୁଣି ସେ ସ୍ୱାମୀକୁ କହିଲା— ତୁମ ଭାଉଜ ଏତେ ମାତ କାହିଁକି ? ସ୍ୱାମୀ ଗରୀବ ଥିଲା ବେଳେ ସେ ବାପ

ଘରକୁ ଚାଲିଗଲେ, ଆଉ ଏକ୍ଷଣି ସ୍ୱାମୀ କିଛି ଟଙ୍କା ରୋଜଗାର କରୁଛି ବୋଲି ତାହାର ଗୋଡ଼ ତଳେ ପଡ଼ିବ ? ବଡ଼ ଘରର ଝିଅମାନେ କଅଣ ଏତେ ନୀଚ ହୁଅନ୍ତି ?

ଚନ୍ଦନ ଜବାବ ଦେଲା—ନାରୀ ନରକର ଦ୍ୱାର ଏବଂ ପୁଅ ଝିଅଙ୍କ ପାଇଁ ସ୍ତ୍ରୀର ପ୍ରୟୋଜନ, ଏହିସବୁ ଧାରଣା ହଜାରେ ବର୍ଷ ହେଲା ଆମ ସମାଜରେ ଚଳି ଆସୁଛି । ସେଇଥି ପାଇଁ ଝିଅମାନେ ନିଜକୁ ସେହି ଭାବରେ ତିଆରି କରନ୍ତି । ଏଥିରେ ସେମାନଙ୍କ ମନର ଜୋର ଏତେ ଟାଣ ରହିବ କିପରି !

ରେଖା କିଛି କ୍ଷଣ ଚିନ୍ତା କରି କହିଲା— ସବୁ ଝିଅ ତ ଏତେ ଦୁର୍ବଳ ନୁହନ୍ତି ।

— ଯେଉଁ ଝିଅମାନଙ୍କର ନିଜର ଶକ୍ତି ଉପରେ ଆସ୍ଥା ଅଛି, ସେମାନେ କଦାପି ଏମିତିକା ହେବେ ନାହିଁ ।

ଦେଢ଼ଶୁର ଓ ସ୍ୱାମୀର କଥା ଭାବୁଁ ଭାବୁଁ ରେଖାକୁ ନିଦ ଆସିଗଲା । ସକାଳେ ନିଦ ଭାଙ୍ଗିଲା କ୍ଷଣି ଘରେ ଗୋଳମାଳର ଶବ୍ଦ ତାହାର କାନରେ ବାଜିଲା । ଭାବିଲା, ହୁଏତ ନୂଆ ଜମି ଓ ଆସବାବ ପତ୍ର କିଣା ସମ୍ପର୍କରେ ମାଆ ଓ ପୁଅଙ୍କ ଭିତରେ କଥା କଟାକଟି ଚାଲିଛି । ଗତ ତିନି ଦିନ ହେଲା ଏହି ବିଷୟରେ ବହୁ ବାର ସେମାନଙ୍କ ଭିତରେ ଝଗଡ଼ା ହୋଇଛି । କିନ୍ତୁ ଜଣେ ମହିଳାର ଗଳା ଶୁଣି ରେଖାର ସେହି ଭୁଲ ଭାଙ୍ଗିଲା । ଦୁଆର ଖୋଲି ସେ ବାହାରକୁ ଆସି ଦେଖିଲା, ଦେଖା ଖଟ ଉପରେ ବସି ବଡ଼ ପାଟିରେ କଳି କରୁଛି । ଶାଶୁ କହିଲା, ସେହି ଦିନ ଏମିତି ତରବରରେ ଏଠାରୁ ଚାଲିଗଲୁ ଯେ ସତେ ଯେମିତି ସେଠାରେ ତୋ । ପାଇଁ କେହି ଭାତ ବାଢ଼ି ବସିଥିଲେ । ଚନ୍ଦନର ବାହାଘର ବେଳେ କେତେ କୁହାବୋଲା କରିବାରୁ ଆସି ମାତ୍ର ଦିନ ତିନିଟା ଯାଉ ନ ଯାଉଣୁ ତୁ ହମହମ

ହୋଇ ପୁଣି ଏଠାରୁ ଚାଲିଗଲୁ । ଭାବିଥିଲୁ, ଶଶୁର ଘର ଗଲାବ ବୋଲି ଗାଁରଆଡ଼େ ଢୋଲ ବାଡ଼େଇ ବୁଲି ଦୂରି ପାରିବୁ ।

ରେଖା ଚଡ଼ା ଗଳାରେ କହିଲା— ତେଣେ ଗାଇଜ ଯାକର ଲୋକେ କହୁ ଥିଲେ ଯେ ରେଖାର ସ୍ୱାମୀ ଏତେ ଟଙ୍କା ରୋଜଗାର କରୁଛନ୍ତି, ତୁମେ କାହିଁକି ଝିଅଟାକୁ ଆଣି ଏତେ ଦିନ ହେଲା ତୁମ ଘରେ ରଖିଛ ? ଗାଁରଆଡ଼େ ଲୋକଙ୍କ କଥା ଶୁଣି ବାବା ମୋତେ ଯିବାକୁ କହିଲେ ।

ଶାଶୁ ଜୋରରେ ଖୁଣ୍ଟା ଦେଲା— ଓ, ତାହା ହେଲେ ଲୋକ-ନିନ୍ଦାର ଡରରେ ସେଠାରୁ ପଳାଇ ଆସିଲୁ । ଖୁବ୍ ତ ଗୁମର କରି ଚାଲି ଯାଇଥିଲୁ, ଏକଣି ଆଉ ମୁକାବିଲା କରି ପାରିଲୁ ନାହିଁ ।

ରେଖା ଅଦୂରରେ ଠିଆ ହୋଇ ଲକ୍ଷ୍ୟ କଲା, ଦେଢଶୁର ସ୍ତ୍ରୀର ପଛରେ ଛିଡ଼ା ହୋଇ ମାଆକୁ ଚୁପ କରିବା ପାଇଁ ଇଙ୍ଗିତ ଦେଲା । ରେଖା ଭାବିଲା, ଯାହା ହେଉ ପଛକେ ଯଦି ସ୍ୱାମୀ ନିଜ ସ୍ତ୍ରୀର ସମ୍ମାନ ରଖିବା ପାଇଁ ଚେଷ୍ଟା ନ କରେ ତାହା ହେଲେ ଆଉ କଅଣ ହେବ !

ଗେଲପର ମାଆ ଚଡ଼ା ଗଳାରେ କହିଲା— ଏ ଘରେ ରହିବାକୁ ହେଲେ ଏତେ ଦମାକ ଦେଖାଇଲେ ଚଳିବ ନାହିଁ । ସନ୍ଧ୍ୟା ବେଳେ ବାପଘରକୁ ଯାଇ ଶାଢ଼ୀ ଫାଢ଼ୀ ଯାହା କିଛି ଏଠାରୁ ନେଇ ଯାଇଥିଲୁ ସବୁ ନେଇ ଆସିବୁ ।

ରେଖା ମାସେ ଖଣ୍ଡେ ଠିକଏ ଚୁପ୍‌ଚାପ ରହିଲା । କିନ୍ତୁ ତା ପରେ ସେ ନିଜର ଅସଲ ରୂପ ଧାରଣ କଲା । ଏବେ ସେ ଆଉ ବାପ ଘରକୁ ଯିବା କଥା ଉଠାଏ ନାହିଁ । ମଝିରେ ମଝିରେ ସେ ପଦେ ଦୁଇ ପଦ କଥାର ନିଆଁ ହୁଳା ଶାଶୁର ଦେହରେ ଫୋପାଡ଼ି ଦିଏ । ଏଣେ ଗୋଲାପ ଓ ରେଖାର ସମ୍ପର୍କ ଦିନକୁ ଦିନ ଗଭୀର ଓ ନିବିଡ଼

ହେବାକୁ ଲଗିଲ । ଗୋଲପର ମାଆ ଲକ୍ଷ୍ୟ କଲା, ଗୋପ ଓ ଶ୍ୟାମର ଭାଗରେ ଗିଲାସେ ଦୁଧ ପଡ଼େ ନାହିଁ, କିନ୍ତୁ ନାତି ସୁନ୍ଦର ଦୁଇ ଓଳ ପେଟ ପୂରା ଦୁଧ ଖାଏ । ଏହି କଥା ନେଇ ଦିନେ ପାଟି ଫିଟାଇବାରୁ ଦେବୀ ବିଦ୍ରୂପ କରି ଶାଶୁକୁ କହିଲା— ଭାଗ୍ୟକୁ ମୋ ସ୍ୱାମୀ ବେଶୀ ଟଙ୍କା ରୋଜଗାର କରି ଆଣିଛି, ନୋହିଲେ ଦୁଧତ ଦୂରର କଥା, ଭାତ ମୁଠାଏ ତୁମକୁ ଆଜି ମିଳନ୍ତା ନାହିଁ ।

ଦେଖୁଁ ଦେଖୁଁ ସେମାନଙ୍କର ପାରିବାରିକ ସମ୍ପର୍କ ଜଟିଳ ଓ ତିକ୍ତ ହେବାକୁ ଲଗିଲା । ଦିନେ ଦେବୀ କଇଁ କଇଁ କାନ୍ଦି ସ୍ୱାମୀକୁ କହିଲା —ଶୁଣୁଛ, ତୁମେ ଯେତେ ଖଟି ଖଟି ମର, ଯେତେ ଟଙ୍କା ରୋଜଗାର କର ନା କାହିଁକି, ଏ ଘରର ଲୋକଙ୍କୁ କେବେ ଖୁସି କରି ପାରିବ ନାହିଁ । ଅନବରତ ଏଟା ନାହିଁ, ସେଟା ନାହିଁ ଲାଗି ରହିଛି । ସାମାନ୍ୟ ଖଣ୍ଡିଏ ପାମ୍ପଡ଼ ସୁନ୍ଦରକୁ ଭାଜି କରି ଦେଲି ବୋଲି ମାଆ ଘରି ଦୁରର କମ୍ପାଇ ହୈଚୈ କଲେ । ମୋର ଅପରାଧ ଏତିକି ଯେ ମୁଁ ଗୋପ ଓ ଶ୍ୟାମକୁ ଦେଇ ନାହିଁ । ଜିନିସ ନ ଥିଲେ ଆଉ କେଉଁଠୁ ଆଣି ଦେବ !

ଏହା ଶୁଣି ଗୋଲପ ରାଗରେ ଜଳିଗଲା ; କାଣ୍ଡଜ୍ଞାନ ହରାଇ ସେ ସିଧା ଧାଇଁ ଯାଇ ଶ୍ୟାମ ଓ ଗୋପର ଗାଲରେ ଦୁଇ ଥାପଡ଼ ବସାଇ ଦେଲା ।

ମାଆ ଆର୍ତ୍ତନାଦ କଲା— କିରେ, କିରେ, ସେମାନଙ୍କୁ ମାରୁଛୁ କାହିଁକିରେ !

ଗୋଲାପ ରାଗରେ ଫୁଲି ଯାଇ କହିଲା— ତୋର ଏତେ ମୁଣ୍ଡ ବଥାଉଛି କାହିଁକି ! ବୁଢୀ ହେଲୁଣି, ଚୁପ ହୋଇ ଗୋଟାଏ କୋଣରେ ବସିଥାଆ ।

ମାଆ ପୁଣି କହିଲା— ଏତେ ରାଗୁଛୁ କାହିଁକିରେ, ବାବା ! ତୋର ପୁଅ ଏକା ଆନନ୍ଦରେ ଯାହାଇଚ୍ଛା ଖାଉ ଥାଉ । କିରେ,

ଗୋପ ଆଉ ଶ୍ୟାମ ତ କେଉଁଠୁ ସାଉଁଟି ଆଣିଲା ପିଲା ନୁହନ୍ତି । ଦୁଇ ଖଣ୍ଡ ପାମ୍‌ଉ ଏକା ସୁନ୍ଦରକୁ ନ ଦେଇ ଶ୍ୟାମ ଓ ଗୋପର ହାତରେ ସେଥିରୁ ଭାଙ୍ଗି ଟିକିଏ ଟିକିଏ ଦେଇଥିଲେ କଅଣ ତାହାର ପେଟରୁ ଉଣା ହୋଇ ଥାଆନ୍ତା !

ସଙ୍ଗେ ସଙ୍ଗେ ଦେଖା ସ୍ୱାମୀକୁ କହିଲା— କହୁଥିଲି ପରା, ଆମ ସୁନ୍ଦରକୁ ସେମାନେ ଦୁଇ ଆଖିରେ ଦେଖି ପାରୁ ନାହାନ୍ତି ।

ଗୋଲାପର ମାଆ ଗର୍ଜନ କଲା—କେଉଁଠିକାର ଭାଇ-ଭଗାରିଆ ଝିଅ ଆସିଛି ଆମ ଘର ଭାଙ୍ଗିବା ପାଇଁ । ତାହା ନ ହେଲେ ମୋ ଗୋଲାପ ତ କେବେ ତାହାର ଭାଇମାନଙ୍କ ଦେହରେ ହାତ ଦିଏ ନାହିଁ । ଦିନ ସାରା ସ୍ୱାମୀ କଡରେ ବସି ରହି ସେ ତାହାର କାନ ଭିତରେ ଯାବତୀୟ ଘରଭଙ୍ଗା କଥା ପୂରାଉଛି ।

କିନ୍ତୁ ଗୋଲାପ ନିକଟରେ ସେହି କଥାର ଅର୍ଥ ଅନ୍ୟ ରକମ ଜଣାଗଲା । ସେ ତୁରନ୍ତ କହି ପକାଇଲା— ତାହାର ମାନେ, ତୁ କହିବାକୁ ଚାହୁଁ ଯେ ମୁଁ ମୋ ସ୍ତ୍ରୀର କଥାରେ ଉଠୁଛି ବସୁଛି !

ମାଆ ବିକବିକିକ ଜ୍ଞାନଶୂନ୍ୟ ହୋଇ କହିଲା— ହଁ, ତାହା ଛଡ଼ା ଆଉ କଅଣ ! ନୋହିଲେ କଅଣ ତୁ ମୋ ପିଲାମାନଙ୍କୁ ଏମିତି ଭାବରେ ମାରି ଥାଆନ୍ତୁ । ମୋ ପୁଅ ଦୁହେଁ ଛେଉଣ୍ଡ ପିଲା କି ରେ ?

ଗୋଲାପ ରାଗରେ ଥରି ଥରି କହିଲା— ଆଉ ମୋ ପୁଅ ! ମୁଁ ବୋଧ ହୁଏ ପର ?

ଆଉ କିଛି କଥା ନ କହି ଗୋଲାପ ପାଖ ଘରକୁ ପଶିଗଲା । ଦିପହରେ ଭୋଜନ ହୋଇ ନାହିଁ, ଆଉ ତେଣେ ରାତିରେ ବି ତାଆସ ଖେଳ ହୋଇ ନ ଥିଲା ।

ଚନ୍ଦନ ଘରକୁ ଫେରିଲା ପରେ ମାଆ ତାହାକୁ ସବୁ କଥା କହିଲା । ବଡ଼ ଭାଇର ବ୍ୟବହାରରେ କ୍ଷୋଭ ପ୍ରକାଶ କରି ଚନ୍ଦନ କହିଲା— ମୁଁ ଆଉ କଅଣ କହିବ ମାଆ ? ପ୍ରୟୋଜନର ଅତିରିକ୍ତ ଟଙ୍କା ହାତକୁ ଆସିଗଲେ ମଣିଷର କାଣ୍ଡଜ୍ଞାନ ଲୋପ ପାଏ ।

ଚନ୍ଦନ କଥାଗୁଡ଼ାକ ଆସ୍ତେ ଆସ୍ତେ କହିଲେ ସୁଦ୍ଧା, ପାଖ ଘରୁ ସେସବୁ ଶୁଣି ପାରି ଗୋଲାପ ଚିତ୍କାର କଲା— ହଁରେ, ମୋର କାଣ୍ଡଜ୍ଞାନ ଥିଲେ କଅଣ ଆଉ ନିଜର ରକ୍ତକୁ ପାଣି କରି ଅର୍ଜିତ ଟଙ୍କାରେ ତୁମମାନଙ୍କୁ ପୋଷୁ ଥାଆନ୍ତି ! କେତୁଟା ଦିନ ହେଲା ତ ଆସିଛୁ । ତାହାର ଭିତରେ ଜମା ଛଅ ଶହ ଟଙ୍କା ଖରଚ ହୋଇଛି !

ଚନ୍ଦନ ବୁଝିଲା, ଏକ୍ଷଣି ମୁହଁ ଖୋଲିଲେ ଝଗଡ଼ା ଲାଗିବ । ସୁତରାଂ ସେ କହିଲା— ହୁଏତ ମାଆ ରାଗରେ ତୁମକୁ ଗୋଟାଏ କଥା କହି ଦେଇଛି । ତାହା ବୋଲି ତୁମର ଏତେ ଅଧୈର୍ଯ୍ୟ ହେବା ଉଚିତ ହୋଇ ନାହିଁ । ଯେତେ ହେଲେ ସେ ତ ତୁମର ମାଆ !

ଗୋଲାପ କହିଲା— ସେଟା ସତ । ଏବେ ତ କାଲିର ସନ୍ଧ୍ୟା । ଏହା ପରେ ଘରଦ୍ୱାର କଲେ ଆହୁରି କେତେ କଥା ଶୁଣିବାକୁ ହେବ । ଏତେ ଦିନ ହେଲା ମୁଁ ଦେଖୀର କଥା ବିଶ୍ୱାସ କରୁ ନ ଥିଲି । ଏକ୍ଷଣି ଦେଖୁଛି, ତାହାର କଥା ଅକ୍ଷରେ ଅକ୍ଷରେ ଫଳୁଛି । ଅସଲ କଥା ହେଲା, ମୁଁ କେତେ ହଜାର ଟଙ୍କା ରୋଜଗାର କରୁଛି ବୋଲି ତୁମମାନଙ୍କର ଦେହ ସହୁ ନାହିଁ । ଯଦି ଏତେ କ୍ଷମତା ଅଛି, ତାହା ହେଲେ ଟଙ୍କା ରୋଜଗାର ଦେଖାଇ ଦେଇ ପାରୁ । ପରର ଦେଖି ଏତେ ଜଳି ଯାଉଛୁ କାହିଁକି !

ମାଆ ଆଉ ଚୁପ ହୋଇ ରହି ପାରିଲା ନାହିଁ । ଅଳ୍ପ ସମୟ ଭିତରେ ସମସ୍ତଙ୍କର କଥା କଟାକଟି ଓ ହୈଚୈ ଘରର ବାତାବରଣକୁ ଗରମ କରିଦେଲା । ଯାହା ଭୁଣ୍ଡକୁ ଆସିଲା ଗୋଲାପ

ସମସ୍ତଙ୍କୁ ତାହା କହିଲା । ଶେଷରେ ସଶବ୍ଦରେ ଛେପ ପକାଇ ସେ କହିଲା— ଆଗରୁ ଯେମିତି କାଙ୍ଗାଳଙ୍କ ପରି ଚଳୁଥିଲ, ଏଣିକି ସେପରି ହେବ । ଏତେ ଦିନ ହେଲା ମୁଣ୍ଡର ଝାଳ ଭୁଇଁରେ ମାରି ମୁଁ ତୁମ୍ଭ-ମାନଙ୍କର ଯେଉଁ ଉପକାର କରିଛି, ଯେତେ ବେଳେ ସେସବୁର କିଛି ଫଳ ନାହିଁ, ସେତେ ବେଳେ ମୋର ଆଉ ଏ ଘରେ ରହିବା କି ଦରକାର ।

ପରଦିନ ଗୋଲାପ ସତକୁ ସତ ଦେଖା ଓ ସୁନ୍ଦରକୁ ନେଇ ହୋଟେଲରେ ଯାଇ ରହିବା ପାଇଁ ପ୍ରସ୍ତୁତ ହେଉଥିଲା । ଏହା ଦେଖି ତାହାର ମାଆ କାନ୍ଦି ପକାଇଲା । କାନ୍ଦୁ କାନ୍ଦୁ ସେ କହିଲା— ଜୀବନଟା ଯାକ ଅଭାବ ଅନାଟନ ଭିତରେ କଟାଇଛି, ଛିଣ୍ଡା ତାଳିପକା ଲୁଗା ପିନ୍ଧି ଦିନ ବିତାଇଛି, କେତେ ଦିନ ଉପବାସ ବି ରହିଛି । ଭାବିଥିଲି ଏତେ ଦିନେ ଟିକିଏ ଭଲ ଭାବରେ ଖାଇ ପିଇ ବାକି ଦିନଗୁଡ଼ାକ କୌଣସି ମତେ କଟାଇ ଦେବି । ମାତ୍ର ଭଗବାନ ତାହା ସହି ପାରିଲେ ନାହିଁ ।

ଗୋଲାପ କହିଲା— ଭଗବାନଙ୍କର କାହିଁକି ଅସହ୍ୟ ହେବ, ସେ ଠିକ୍ ସହିଛନ୍ତି । ସହ୍ୟ ହେଲା ନାହିଁ ତୋର କାଙ୍ଗାଳ ଚନ୍ଦନର । ଟଙ୍କା ହୋଇଛି ବୋଲି ମୁଁ କୁଆଡେ କାଣ୍ଡଜ୍ଞାନ ସବୁ ହରାଇ ବସିଛି ।

ମାଆ ପୁଣି ଦୁଃଖରେ କହିଲା— ମୋ ଚନ୍ଦନ ହିଁ ଗାଇଜ ଯାକର ଅନର୍ଥର ମୂଳରେ ଅଛି । ଯଦି ସେ ଖଣ୍ଡିଏ ଭଲ ଚାକିରି କରି ଥାଆନ୍ତା ଏବଂ ମୋଟା ଦରମା ପାଉ ଥାଆନ୍ତା, ତାହା ହେଲେ ଆମର ଆଜ ଏତେ ଦୁଃଖ ନ ଥାଆନ୍ତା ।

ରେଖା ଥରେ ଶାଶୁର ମୁହଁକୁ ଏବଂ ତା ପରେ ଥରେ ଦେଢ଼-ଶୁରର ମୁହଁକୁ ଅନାଇ ମୁଖ ବୁଲାଇ ନେଇ ହୁଁ ଚୋଷେଇ କରିବାକୁ ଚାଲିଗଲା । ଗୋଲାପ କହିଲା—ଦେଖିଛି, ଆଜିକାଲି ସାନ ବୋହୂ ବି

ଏମିତି ଢମାକ୍ ଦେଖାଉଛି ଯେ ମନେ ହେଉଛି, ସତେ ଯେମିତି ତାହାର ବାପଘରର ସମ୍ପତ୍ତି ବିକ ଘରକି ଆମେ ଚଳୁଛୁ ।

କଥାଗୁଡ଼ାକ ରେଖାର କାନରେ ବାଜିଲା । ସେ ମନେ ମନେ ଭାବିଲା, କଳି କେଉଁଠୁ ଆରମ୍ଭ ହୋଇଛି, ଆଉ କୁଆଡ଼େ ଯାଉଛି ! ଚନ୍ଦନର କାନରେ ନିଶ୍ଚୟ ଏସବୁ କଥା ପଡ଼ୁଛି, କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ସେ ପଦେ ହେଲେ କଥା କହୁ ନାହିଁ । ସ୍ୱାମୀର ଏହି ଭୂମିକା ରେଖାକୁ ଖୁବ୍ ଭଲ ଲାଗିଲା । ସେ ମନେ ମନେ ସ୍ୱାମୀକୁ ପ୍ରଣାମ କଲା ।

ଯାହା ହେବାର କଥା ତାହାହିଁ ହେଲା । ଗୋଲପ ଗୋଟିଏ ଫ୍ଲାଟରେ ଯାଇ ରହିଲା । ତାହା ସାଙ୍ଗରେ ମାଆ ଓ ସାନ ଭାଇ ଦୁହେଁ ଗଲେ । ସେମାନଙ୍କର ଯିବା ବେଳେ ରେଖାର ମୁଖ ଅତ୍ୟନ୍ତ କରୁଣ ଦିଶିଲା । ସେହି ସମୟରେ ତାହାର ଆଖି ଓ ମୁଖ ଦେଖି ମନେ ହେଉଥିଲା, ଯେମିତି ସେ ଅନେକ ଦିନ ହେଲା କାନ୍ଦୁଛି । ଶାଶୁର ପେଟରା ଓ ବାକ୍ସ ଗାଡ଼ିରେ ଉଠାଇ ଦେଉଁ ଦେଉଁ ରେଖା କହିଲା— ମାଆ, ତୁମର ସାନ ବୋହୂକୁ ଭୁଲିଯିବ ନାହିଁ । ନିତି ଅନ୍ତତଃ ଥରେ ଲେଖାଏଁ ଆସିବ । ଏହି ଘରେ ମୋତେ ଦିନ ସାରା ଏକା ରହିବାକୁ ହେବ ଭାବିଲା କ୍ଷଣି ଭାରି ଡ଼ର ମାଡ଼ୁଛି ।

ସଙ୍ଗେ ସଙ୍ଗେ ଦେଢ଼ା କହି ପକାଇଲା —ଆହା, ମରି ଯାଉଥାଏ, ଆମ ଘରେ ବୋଧ ହୁଏ ଆଉ କିଛି କାମ ଦାମ ନାହିଁ । ନିତି ନିତି ଆସି ଏହି ଚୌଧୁରାଣୀକୁ ଦେଖି ଯିବାକୁ ହେବ ! ମାଆ, ତୁମେ ତାହାକୁ କହିଦିଅ ତ, ପ୍ରୟୋଜନଟା ତାହାର ନା ଆମର । ଯଦି ଘରେ ଏକା ରହିଲେ ତୋତେ ଡ଼ରମାଡ଼ିବ, ତୁ ଆମ ଘରକୁ ଯିବୁ । ଆମେ କେଉଁ ଦୁଃଖରେ ଏଠାକୁ ଆସିବୁ !

ରେଖାର ଖୁବ୍ ଇଚ୍ଛା ହେଲା କହି ଦେବାକୁ, ପିମ୍ପୁଡ଼ିର ପର ଲାଗେ ମରିବା ପାଇଁ । କିନ୍ତୁ ବିଦାୟ ବେଳେ ଏହି ରକମ ଅପ୍ରିୟ ସତ୍ୟ କଥା କହିବାକୁ ତାହାର ମନ ବଳିଲା ନାହିଁ । ସେ ଚୁପ ହୋଇ ରହିଲା । ଆଜ ଦେଖା ଆଉକୁ ଡଗଜ୍ ଡ଼ଳଟୁ । ତାହାର ଜୟ ହେଉ !

ଯିବା ବେଳେ ଗୋଲାପର ମାଆ କାନ୍ଦି କାନ୍ଦି ରେଖାକୁ କୁଣ୍ଢାଇ ଧରି କହିଲେ—ଦୁସିଆର ହୋଇ ରହିବୁ, ମାଆ । ତୋ ପରି କୋମଳ ମତି ଝିଅକୁ ଏଠାରେ ଏକା ଛାଡ଼ି ଦେଇ ଯିବାକୁ ମୋତେ ଭାରି କଷ୍ଟ ହେଉଛି । ପରେ ଗୋଲାପ ମୋତେ ଭୁଲି ନ ଯାଉ, ସେଇଥି ପାଇଁ ଆଜ ତାହା ସାଙ୍ଗରେ ଯାଉଛି । ତାହା ଛଡ଼ା, ମୋ ଜୀବନଟା ଯାକ ତ ଦୁଃଖ କଷ୍ଟ ଭିତରେ କଟିଲା, ବାକି ଦିନ ଗୁଡ଼ାକ ଯଦି ଟିକଏ— ।

ନୂଆ ଜାଗାକୁ ଯିବାର ଆନନ୍ଦରେ ଶ୍ୟାମ ଉତ୍‌ଫୁଲ୍ଲ ଦିଶୁଥିଲେ ସୁଦ୍ଧା ଗୋପ ମନମାରି ଜଣା ଯାଉଥିଲା । ସେହି ଦୁଇ ଜଣଙ୍କୁ ବିଦାୟ ଦେଲା ବେଳେ ରେଖା ଭେ ଭେ ହୋଇ କାନ୍ଦି ପକାଇଲା । ଦେଖା ଚଟି ପିନ୍ଧି ପଟପଟ କରି ଯାଉଁ ଯାଉଁ ଗରମ ମସଲାର ଶିଶିଟା ମୁଣିରେ ପୂରାଇ କହିଲା— ହେଉ, ରେଖା, ଏବେ ଯାଉଛୁ ।

ସୁନ୍ଦର ଠା ଠା କହିଲା । ସୁନ୍ଦରକୁ କାଖେଇ ରେଖା ଆର୍ତ୍ତନାଦ କଲା । ଦେଖା ସୁନ୍ଦରକୁ ତାହାର କୋଳରୁ ନେଇ ଯାଇ ଥରେ ହେଲେ ପଛକୁ ନ ଚାହିଁ ସିଧା ଚାଲିଗଲା ।

ପରିଚିତ ସୈନିକ ପରି ଟଳି ଟଳି ଆସି ରେଖା ବିଛଣାରେ ପଡ଼ି ଯାଇ ଧକେଇ ଧକେଇ କାନ୍ଦିଲା । ତାହାର ଆଖିର ଲୁହରେ ତକିଆ ଓଦା ହୋଇଗଲା, କିନ୍ତୁ ଦୁଃଖ ଲାଘବ ହେଲା ନାହିଁ ।

## ୭

ରାତି ସାଢ଼େ ଦଶଟା । ବର୍ଷା ଛାଡ଼ିଲାଣି । ଏଯାଏ ଚନ୍ଦନ ଘରକୁ ଫେରି ନାହିଁ ।

ରେଖା ବଦ୍ଧଳ ଅନ୍ଧାର ଆଡ଼କୁ ଅନାଇ ଭାବୁଛି, ଏ ଧରଣର ଜୀବନ ତାହାକୁ ଆଉ କେତେ ବର୍ଷ ବିତାଇବାକୁ ହେବ କେଜାଣି । ଏକ ଅସହ୍ୟ ଦୁଃଖର ଯନ୍ତ୍ରଣାରେ ତାହାର ମନ ହାହାକାର କଲା । ସେ ଏକା ବସି ରହି ଅନେକ କ୍ଷଣଯାଏ ଚିନ୍ତା କଲା । ହଠାତ୍ ଏକ ସମୟରେ ତାହାର ମନେ ହେଲା, ତାହାର ଗୁଡ଼ରେ ଡାହାଣ ପଟଟା ଚିନ୍‌ଚିନ୍ କରୁଛି । ସେ ଏହାର କାରଣ ମନେ ମନେ ଖୋଜିବାକୁ ଚେଷ୍ଟା କଲା । ଗୋଟିଏ ସୁନ୍ଦର ଶିଶୁର ଛବି ତାହାର ମନ ଆକାଶରେ ଭାସି ଉଠିଲା ।

ଅନେକ କ୍ଷଣ ପରେ ଦରଜାରେ ଖଟଖଟ ଆବାଜ ଶୁଭିଲା । କ୍ଳାନ୍ତ ଶ୍ରାନ୍ତ ଚନ୍ଦନ ଘରେ ପ୍ରବେଶ କଲା । ତାହାର ଅଲକ୍ଷ୍ୟରେ ଚନ୍ଦନ ବହୁତ ବେଳଯାଏ ରେଖା ଆଡ଼କୁ ଚାହିଁ ରହିଲା । ଏକ ଅଜ୍ଞାତ ବିଷାଦ ଭିତରେ ବି ରେଖା ସୁନ୍ଦର ଦିଶୁଥିଲା । ଖିଆପିଆ ସାରି ରେଖା ଅନ୍ୟ ଆଡ଼କୁ ମୁହଁ ବୁଲାଇ ଶୋଇ ପଡ଼ିଲା । କିଛି କ୍ଷଣ ପଦଚାରଣ କରି ଚନ୍ଦନ ଆସି ବିଛଣାରେ ବସିଲା । ପଡ଼ିଶା ଘରର କାନ୍ଥ ଘଡ଼ିରେ ଘଣ୍ଟାଟା କେତେ ଥର ବାଜିଲା ।

ରେଖାର ଆଖିକୁ ନିଦ ଆସୁ ନ ଥିଲା । ତଥାପି ଯେତେ ବେଳେ ସ୍ୱାମୀ ତାହାକୁ ପଚାରିଲା ଯେ ସେ ଶୋଇ ପଡ଼ିଲାଣି କି ନା, ସେତେ ବେଳେ ସେ କିଛି ଜବାବ ଦେଲା ନାହିଁ । କିନ୍ତୁ ସେ ବେଶୀ ବେଳ ଯାଏ ଛଳନା କରି ରହି ପାରିଲା ନାହିଁ । ଚନ୍ଦନ ରେଖାର ଦେହରେ ହାତ ଦେଲା ମାତ୍ରେ ସେ ତାହାର ହାତଟା ଦୂଆଇ ଦେଲା । ଚନ୍ଦନ

ନିଜର ଅପରାଧ ସ୍ୱୀକାର କରି କହିଲି— ସତରେ ଆଜି ମୋର ଘରକୁ ଫେରିବାରେ ଢେର୍ ଡେରି ହୋଇଗଲା । କିନ୍ତୁ କାହିଁକି ହେଲା, କହି ପାରିବ ?

ରେଖା କିଛି ଜବାବ ଦେଲା ନାହିଁ ।

ଚନ୍ଦନ ପୁଣି କହିବାକୁ ଲାଗିଲା— ଆଜି ମୋର ଜଣେ ସହକର୍ମୀର ସ୍ତ୍ରୀର ଦେହାନ୍ତ ହେଲା । ମୋତେ ଶ୍ମଶାନକୁ ଯିବାକୁ ପଡ଼ିଲା । ସେଠାରୁ ସିଧା ଘରକୁ ଫେରୁଛି ।

ସଙ୍ଗେ ସଙ୍ଗେ ଚନ୍ଦନର ଆଖି ଆଗରେ ଭାସିଗଲା ସେହି ସହକର୍ମୀର ଚେହେରା । କି ଅଦ୍ଭୁତ ମମତାପୂର୍ଣ୍ଣ ଦୃଷ୍ଟିରେ ସେ ସ୍ତ୍ରୀର ମୃତ ଦେହ ଆଡକୁ ଅନାଇଥିଲା । ସେହି ଛବିଟି ଆଖି ସାମନାରେ ଭାସିଲା ମାତ୍ରେ ଚନ୍ଦନର ସର୍ବାଙ୍ଗରେ ଶୀହରଣ ଖେଳି-ଗଲା । ହଠାତ୍ ରେଖାକୁ ପାଖକୁ ଟାଣି ନେଇ ସେ ଲକ୍ଷ୍ୟ କଲା ଯେ ସେ କାନ୍ଦୁଛି । ଅନେକ କ୍ଷଣ କିଛି କଥା ନ କହି ଏକ ଦୃଷ୍ଟିରେ ତାହା ଆଡ଼କୁ ଅନାଇ ତାହାକୁ ଆହୁରି ଜୋରରେ ଭିଡ଼ି ଧରି ସେ କୋମଳ କଣ୍ଠରେ ପଚାରିଲା—ରେଖା, କାନ୍ଦୁଛ କାହିଁକି ? କଅଣ ହୋଇଛି, କହୁ ନାହଁ ?

କିଛି ନୁହେଁ— ରେଖା ସ୍ୱାମୀର ଛାତିରେ ମୁହଁ ଲୁଚାଇଲା ।

ଚନ୍ଦନ ଅନେକ କ୍ଷଣ କିଛି କଥା କହି ପାରିଲା ନାହିଁ । ତା ପରେ ସେ କହିଲା— ମୁଁ ତ ତୁମର କିଛି ଅଭାବ ରଖି ନାହିଁ । ତୁମର ଖିଆପିଆରେ ଯେମିତି କିଛି କଷ୍ଟ ନ ହୁଏ, ସେଥି ପ୍ରତି ମୁଁ ବରାବର ନଜର ରଖିଛି ।

ରେଖା ବହୁତ କଷ୍ଟରେ କହି ପକାଇଲା— ଖିଆପିଆ ତ ବାପ ଘରେ ବି ହେଉଥିଲା ! ବିବାହ କଅଣ ସେଇଥି ପାଇଁ ହୁଏ ?

— ଆଚ୍ଛା, ତୁମେ କୁହ ତ, ବିବାହ କେଉଁଥି ପାଇଁ ହୁଏ ?

— ସୁଖକର ଦାମ୍ପତ୍ୟ ଜୀବନ ପାଇଁ । ନୁହେଁ ?

— ତୁମର କଅଣ ଧାରଣାଯେ ମୁଁ ତୁମକୁ ଭଲ ପାଏ ନା ?

— ଥାଉ । ସେହି ବିଷୟରେ ତୁମକୁ ଆଉ କିଛି ନୂଆ ବକ୍ତୃତା ଦେଇ ବୁଝାଇବା ପାଇଁ ଚେଷ୍ଟା କରିବାକୁ ହେବ ନାହିଁ । ମୁଁ ତୁମକୁ ଏ ବିଷୟରେ କେବେ କିଛି କହିବି ନାହିଁ । ଏଣିକି ତୁମେ ଯେତେ ଇଚ୍ଛା ସେତେ ଉତ୍ତର କରି ଫେରି ପାର ।

— ଦେଖ ରେଖା, ଯଦି ବୁଦ୍ଧି ଓ ଯୁକ୍ତି ଦ୍ୱାରା ମୋତେ ବୁଝାଇବାକୁ ଚେଷ୍ଟା ନ କର, ତାହା ହେଲେ ମୁଁ ସତରେ ଅକ୍ଷମ । ଅବଶ୍ୟ ତୁମେ ଯେମିତି ଭାବରେ ଚିନ୍ତା କର, ସାଧାରଣ ନାରୀମାନେ ସେୟା କରନ୍ତି । ଦେଶର ପରିସ୍ଥିତି ସମ୍ପର୍କରେ ନୂଆ କିଛି ଚିନ୍ତା କରିବାର ସୁଯୋଗ ତୁମ୍ଭମାନଙ୍କର ନ ଥିଲା । ଏଥି ପାଇଁ ଅବଶ୍ୟ ବ୍ୟକ୍ତିଗତ ଭାବରେ ତୁମେ ଦୋଷୀ ନୁହ । ଦୋଷ ଆମ ସମାଜର ।

— ତୁମର ଯାହା ଇଚ୍ଛା ତାହା କୁହ । ମୁଁ ଆଉ ତୁମକୁ କିଛି କହିବି ନାହିଁ ।

ଚନ୍ଦନର ମନେ ହେଲା, ଯେମିତି ସେ ବହୁ କଷ୍ଟରେ ଗୋଟିଏ ନୌକାକୁ କୂଳରେ ଲଗାଇବାକୁ ଚେଷ୍ଟା କରୁଥିଲା, ମାତ୍ର ହଠାତ୍ ଝଡ଼ ଓ ଉତ୍ତାଳ ତରଙ୍ଗର ଧକ୍କାରେ କୂଳରେ ନୌକା ଭିଡ଼ି ପାରିଲା ନାହିଁ । ସେହି ନୌକାଟି ପୁଣି ମଝି ଦରିଆରେ ଭାସି ଭାସି ଚାଲିଗଲା । ପରିଶ୍ରାନ୍ତ ନାଉରି ପରି ସେ ସ୍ତ୍ରୀ ଆଡ଼କୁ ଅନାଇ ରହିଲା । ରେଖାର ଆଖିର କୋଣରେ ଲୁହ ଛଳ ଛଳ ହେଲା । ତାହାର କଣ୍ଠ ସ୍ୱରରେ ବେହାଗର ମୂର୍ଚ୍ଛି ବିଷାଦ । ଭାବୁଁ ଭାବୁଁ ଦୁହେଁ ଶୋଇପଡ଼ିଲେ !

୭

ଦୁଇ ଭାଇ ଅଲଗା ହୋଇଯିବାରୁ, ରେଖା ଅତି ବିଷର୍ଣ୍ଣ ଭାବରେ ଘରେ ଏକା ଦିନ ବିତାଇବାକୁ ଲାଗିଲା । ଚନ୍ଦନ ଯାହା ରୋଜଗାର କରେ, ତାହା ଘର ଖରଚକୁ କୁଳାଏ ନାହିଁ । ମାସିକ ଦରମା ଶହେ ପଚଶ ଟଙ୍କା ଭିତରୁ ପ୍ରୀଳଶ ଟଙ୍କା ଖାଲି ଘରଭଡ଼ା ଦେବାକୁ ହୁଏ । ଆର୍ଥିକ ଅଭାବ ସାଙ୍ଗକୁ ନିଃସଙ୍ଗ ଜୀବନ ତାହା ପକ୍ଷରେ ଅତୀବ ଦୁଃସହ ବୋଧ ହେଲା । ବେଳେ ବେଳେ ପ୍ରତି-ବେଶୀମାନେ ଆସନ୍ତି, କିଛି କ୍ଷଣ ଗପ ସପ ଚାଲେ । ଇତି ମଧ୍ୟରେ ରାଧା ସାଙ୍ଗରେ ରେଖାର ବନ୍ଧୁତା ନିବିଡ଼ ହୋଇଛି । ମଝିରେ ମଝିରେ ଚନ୍ଦନର ବନ୍ଧୁ ମଧ୍ୟ ତାହାକୁ ଭଉଣୀ ବୋଲି ଡାକି ତାହା ସହିତ ପଦେ ଅ ପଦ କଥା ହୁଏ । ଏକମାତ୍ର ହୀରେ ତାହାକୁ ଭାଉଜ ବୋଲି ଡାକେ । ତାହାରି ଦ୍ୱାରା ରେଖା ଘରର ଟ୍ରେଟ କାଠର ଗୋଟାଏ ଦୁଇଟା କାମ କରାଇ ନିଏ । ବିଦ୍ୟାଳୟରେ ଶିକ୍ଷକତା କରି ସାରି ହୀରେର ହାତରେ କିଛି ସମୟ ପ୍ରାୟ ବଳକା ରହେ । ଯେତେ ବେଳେ ରେଖା ବେରାମ ପଡିଥିଲା, ହୀରେ ତାହାର ସେବା ଶୁଶ୍ରୂଷାରେ ଯଥେଷ୍ଟ ସାହାଯ୍ୟ କରିଥିଲା ।

ଦିନେ ଅପରାହ୍ନରେ ହୀରେ ଖବରରେ ଧଇଁସଇଁ ହୋଇ ଆସି ପହଞ୍ଚିଲା ।

ରେଖା କହିଲା— ଏକ୍ଷଣି ତୁମେ ଆସିଲ ଖୁବ୍ ଭଲ କଲ । ଏଠାରେ ଏକା ମୋତେ ଭଲ ଲାଗୁ ନଥିଲା ।

ଖଟିଆ ଉପରେ ବସି ପଡ଼ି ହୀରେ କହିଲା— ଭାଉଜ, ଦେଖୁଛି, ତୁମେ ସବୁବେଳେ ମନମରା ହୋଇ ରହୁଛ । ଏତେ ଉଦାସ ରହୁଛ କାହିଁକି ?

—.କେମିତି ବୁଝିଲି ?

—ସତ କଥା କହିବି ?

—ନା, ମିଛ କଥା କୁହ ।

—ଯେତେ ବେଳେ ତୁମେ ଗଲା ଥର ବେମାର ପଡ଼ିଥିଲ, ମୁଁ ଡାକ୍ତରଖାନାରୁ ଔଷଧ ନେଇ ଆସି ହଠାତ ଦେଖିଲି ଯେ ତୁମେ ପ୍ରଳାପ କରୁଛ । ମୋତେ ଚନ୍ଦନ ବୋଲି ଭାବି ତୁମେ କଇଁ କଇଁ କାନ୍ଦି କହିଲ, ତୁମେ ହିଁ ମୋର ଦେବତା, ମୋର ଗୋଟିଏ ଶ୍ରେଷ୍ଠ ହାଣ୍ଡି ଲୋଡ଼ା । ନା, ନା, ମୁଁ ଭୁଲେ, ମାନେ ମୁଁ କଅଣ କେବେ ମାଆ ହୋଇ ପାରିବି ନାହିଁ ? ଇତ୍ୟାଦି ।

ରେଖା ଲାଜରେ ଲାଲ ପଡ଼ି ଯାଇ ତଳକୁ ମଥା ପୋତିଲା ।

ସ୍ୱାମୀ ପଚାରିଲା— ଅଚ୍ଛା, ଭାଉଜ, ବେମାର ପଡ଼ିବା ଆଗରୁ ତୁମର ଚନ୍ଦନ ସାଙ୍ଗରେ ଝଗଡ଼ା ହୋଇଥିଲା କି ?

ରେଖା ମୁହଁ ନୁଆଁଇ ଆସ୍ତେ ଆସ୍ତେ କହିଲା— ତୁମେ ତ ଜାଣ ସ୍ୱାମୀରେ, ଦିନ ସାରା ମୋତେ ଏକା ଏହି ଘରେ ରହିବାକୁ ପଡ଼େ । ବିଶେଷତଃ ସନ୍ଧ୍ୟା ପରେ ଯେତେ ବେଳେ ଅନ୍ୟମାନଙ୍କ ଘରେ ଆଲୁଅ ଲାଗେ, ପିଲାମାନେ ବିସ୍କୁଟ ଓ ମିଠେଇ ଲାଗି ହେଁଟେଁ କରନ୍ତି ଏବଂ ସେମାନଙ୍କର ବାପମାନେ ଅଫିସ କି କଳ କାରଖାନାରୁ ଫେରି ଆସନ୍ତି, ସେତେବେଳେ ଜାଣେ ନା କାହିଁକି ମୋ ମନ ଖୁବ୍ ଖରାପ ହୁଏ ଏବଂ ମୁଁ ଦବି ଯାଏ । ହୁଏତ ସେହି ସମୟରେ ତୁମର ବନ୍ଧୁ ଅଫିସରେ ବସି ଗରିବ ଗୁରୁବାଙ୍କର ଦୁଃଖର କଥା ଶୁଣୁ ଥାଆନ୍ତି ଏବଂ ସେମାନଙ୍କୁ ନାନା ରକମର ଆବେଦନ ପତ୍ର ଲେଖି ଦେଉ ଥାଆନ୍ତି । ସେତିକି ବେଳେ ମୁଁ ଏକା ଏହି ଘରେ ଥାଏଁ । ଆଉ କିଛି ନ ହେଉ ପଛକେ, ଯଦି ମୋର ଗୋଟିଏ ଶ୍ରେଷ୍ଠ ପିଲା ଥାଆନ୍ତା,

ତାହାହେଲେ ତାହା ମୁହଁକୁ ଚାହିଁ ମୁଁ ସବୁ କହିବି ପାରେ ରହ ଅନ୍ତୁ । ତୁମ ବନ୍ଧୁଙ୍କ ମତରେ, ଏହି ଅଭାବ ଅନାଟନର ଦିନରେ ଗୋଟିଏ ନୂତନ ସନ୍ତାନ ପୃଥିବୀକୁ ଆମଦାନ କରିବା ଉଚିତ ନୁହେଁ । ତାହାକୁ ତ ମୁଁ ମଣିଷ କରି ପାରିବ ନାହିଁ ।

ସ୍ତ୍ରୀରେ ଅନେକ କ୍ଷଣ ମଉନ ରହି କହିଲ— ସତ କଥା କଅଣ ଜାଣ, ଭାଉଜ ? ଚନ୍ଦନର କଥାକୁ ହସି ଉଡ଼ାଇଦେବା ଆଦୌ ଠିକ୍ ନୁହେଁ ।

— ତୁମେ ବି ସେହି କଥା କହୁଛ, ସ୍ତ୍ରୀରେ ! କାହିଁକି ? ଗରିବର ଘରେ କଅଣ ପୁଅଝିଅ ହେବା ମନା ? ଖାଲି ବଡ଼ ଘରେ ହେବେ ?

ଦେଖ, ଭାଉଜ ପ୍ରଶ୍ନଟା ଖାଲି ହେବା କି ନ ହେବା ନୁହେଁ, ସେମାନଙ୍କୁ ଠିକ୍ ଭାବରେ ମଣିଷ କରିବାଟା ହେଉଛି ଅସଲ କଥ । ତାଛଡ଼ା ଚନ୍ଦନ ଯେମିତିକା ଦେଶ ସେବାର କାମରେ ବ୍ୟସ୍ତ, ତାହା ପକ୍ଷରେ ପୁଅ ଝିଅଙ୍କୁ ମଣିଷ କରିବା ପାଇଁ ଯେତିକି ସମୟ ଦେବା ଦରକାର, ହୁଏତ ସେତିକି ସମୟ ତାହାର ହାତରେ ନାହିଁ ।

— ତୁମ ବନ୍ଧୁ ଦେଶ ସେବାର କାମରେ ବ୍ୟସ୍ତ ବୋଲି କଅଣ ମୋତେ ଏହି ଘରି କାନ୍ଥ ଭିତରେ ଅଟକି ରହି ପଚିସଡ଼ି ମରିବାକୁ ପଡ଼ିବ ?

— ତୁମେ ସେମିତି ଭାବରେ ମରିବାକୁ ଯିବ କାହିଁକି ? ହାଣ୍ଡିଶାଳ ଭିତରେ ଆବଦ୍ଧ ରହିବାର ଦିନ ଆଉ ନାହିଁ । ଆଜି-କାଲିକା ସମାଜରେ ନାରୀମାନେ ଖାଲି ଘର-କାମରେ ନୁହେଁ, ବାହାର ଆଡ଼କୁ ମଧ୍ୟ ପାଦ ବଢ଼ାଇଲେଣି । ଆଜ ନାରୀମାନଙ୍କୁ

ସାମାଜିକ ପ୍ରୟୋଜନରେ ପର୍ଦାକୁ ବାହାରିବାକୁ ହେବ, ଏପରିକି ଦରକାର ପଡ଼ିଲେ ସେମାନଙ୍କୁ ମଧ୍ୟ ରୋଜଗାର କରିବାକୁ ହେବ ।

—ମୁଁ ରୋଜଗାର କରିବ ! ଥାଉ, ଥାଉ, ଢେର୍ ହେଲାଣି ! ତୁଏତ ଏକ୍ଷଣି ଆହୁରି ଏମିତିକା କେତେ କଥା କହିବ । କେଉଁ ବଂଶର ଝିଅ ମୁଁ ଜାଣ ? ତାହା ଛଡ଼ା, ଝିଅ ହୋଇ ଜନମି ଫେର୍ ଚାକରୀ କରିବ ! କୁଳର ମାନ ମହତ ସବୁ ବୁଡ଼ାଇବାକୁ ହେବ ନା କଅଣ !

— ଭଉଜ, ତୁମର ଇଚ୍ଛା ଥାଉ ବା ନ ଥାଉ, ଏହା ହେଉଛି ଯୁଗର ଦାବୀ ।

— ଖୁବ୍ ହୋଇଛି । ଥାଉ, ଆଉ ଦୁଃଖର ବୋଝ ବଢ଼ାଇବାକୁ ଚାହେଁ ନା ।

ସ୍ୱୀରେ ଚୁପ ରହିଲା । ସେ ମନେ ମନେ ଭାବିଲା, ମଣିଷ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଅହେତୁକ ନିଜକୁ କେତେ ଦୂର ଭଗ୍ନାନ୍ତ କରି ପକାଏ । ହଠାତ୍ ସେ ଘଡ଼ି ଦେଖି କହିଲା — ଭଉଜ, ଢେର୍ ବେଳ ହେଲାଣି, ଯାଉଛି ।

ତା'ପରେ ସେ ଚନ୍ଦନର ଟେବୁଲ ଉପରୁ କେତେ ଖଣ୍ଡ ବହି ନେଇ ଦାଣ୍ଡକୁ ଚାଲିଗଲା ।

ରେଖା ମନେ ମନେ ଭାବିଲା, ଏହି ପୁରୁଷ ଜାତିଟା କି ଧରଣର ଯନ୍ତ୍ର ! ଜୀବନ ସହିତ କଅଣ ଏମାନଙ୍କର କିଛି ହେଲେ ସମ୍ପର୍କ ନାହିଁ ?

ସୂର୍ଯ୍ୟ ଅସ୍ତାଚଳରେ । କଳ କାରଖାନା ଓ ଅଫିସରୁ ଲୋକେ ଫେରୁଥିଲେ । ପ୍ରତ୍ୟେକଙ୍କ ଘରେ ଆଲୁଅ ଜଳିଲା । କିନ୍ତୁ ରେଖା ଆଲୁଅ ଜାଳିବାକୁ ବି କ୍ଲାନ୍ତ ବୋଧ କରି ଏକା ଅନ୍ଧାରରେ ବସି ରହିଲା ।

## ୮

ପର ଦିନ ସନ୍ଧ୍ୟାବେଳେ ରେଖା ଏକା ବସି ବସି ଅବାକ ହୋଇ ଭାବିଲା, ନାରୀମାନେ କପରି ବଜାର କରିବାକୁ ଯାଆନ୍ତି ! ରାଧିକୁ ବଜାର କରି ଆସିବାର ଦେଖି ସେ ପଚାରିଲା—ତୁମର ସ୍ୱାମୀ ନାହାନ୍ତି କି ? ତୁମେ ଯେ ବଜାର କରିବାକୁ ଗଲ ?

ରାଧା ସହଜ ସ୍ୱାଭାବିକ ଜବାବ ଦେଲା—ସେ ତ ପରିବାରର ସମସ୍ତଙ୍କର ପେଟ ପୂରାଇବା ପାଇଁ ଦିନ ସାରା ହାଡ଼ଭଙ୍ଗା ଖଟଣି କରନ୍ତି । ଯଦି ମୁଁ ସାମାନ୍ୟ ବଜାରଟା କରି ନ ପାରିବି, ତାହା ହେଲେ ବିଚରା ଖଟି ଖଟି ମରିଯିବେ ଯେ । ନିତି ଗାଡ଼ିରେ ଯିବା ଆସିବା କରିବା ଯେ କି ମୁସ୍କିଲ ତାହା ଯେଉଁମାନେ କରନ୍ତି କେବଳ ସେମାନେ ଜାଣନ୍ତି । ତେଣୁ ମୁଁ ତ ପ୍ରାୟ ନିତି ବଜାରକୁ ଯାଏ ।

ରାଧାର କଥା ରେଖାର ମନରେ ରେଖାପାତ କଲା । ସେ ବି ବଜାର କରିବାକୁ ମନ ବଳାଇଲା ।

ସେ ଦିନ ସନ୍ଧ୍ୟା ବେଳେ ସେ ଅନ୍ୟାନ୍ୟ ଦିନ ପରି ଘରେ ଏକା ବସିଥିଲା । ହଠାତ୍ ଗୋପ ହାଜର ହୋଇ କହିଲା— ଭାଉଜ, ଏହି ନିଅ ମୋ ଲୁଗାପଟା ରଖ । ଏଣିକି ମୁଁ ତୁମ ପାଖରେ ରହିବି । ମରିଗଲେ ସୁଦ୍ଧା ଆଉ ବଡ଼ ଭାଇଙ୍କ ଘରକୁ ଯିବ ନାହିଁ ।

ରେଖା ଆଲୁଅ ଲଗାଇ ଗୋପକୁ ଆଦର କରି କହିଲା— କେତେ ଦିନ ପରେ ତୋତେ ଦେଖିଲି । ତାହାର ମୁଣ୍ଡରେ ହାତ ବୁଲାଉଁ ବୁଲାଉଁ ସେ ପଚାରିଲା— ଇସ୍, ଏତେ ରୋଗଣା ହୋଇ ଯାଇଛୁ କାହିଁକି ? ହାଡ଼ସବୁ ଏକାବେଳେ ବାହାରି ପଡ଼ୁଛି ।

ଗୋପ ଏକ ଦୃଷ୍ଟିରେ ରେଖା ଆଡ଼କୁ ଅନାଇ କାନ୍ଦି କାନ୍ଦି ଗୋଲାପ ଓ ତାହାର ସ୍ତ୍ରୀର ନାନା ରକମ ଦୁର୍ବ୍ୟବହାର ଓ ଅତ୍ୟାଚାରର କଥା ତାହା ଆଗରେ ବର୍ଣ୍ଣନା କଲା । ଶେଷରେ କହିଲା

—ବଡ଼ ଭାଇ, ବଡ଼ ଭାଉଜ ଓ ସୁନ୍ଦର ବହୁତ ଦାମିକା ଜିନିଷସବୁ ଖାଆନ୍ତି । ଆମକୁ ତାହା ଦିଅନ୍ତି ନାହିଁ । ଆମକୁ ଭିକାରି ପରି ଦେଖନ୍ତି । ଯେତେ ବେଳେ ପାରେ ସେତେ ବେଳେ ଆମକୁ ଜଙ୍ଗଲି ବୋଲି କହନ୍ତି । ଜଙ୍ଗଲିମାନେ କୁଆଡ଼େ ତାହାଙ୍କ ଘରେ ଯାଇ ଜମା ହୋଇଛନ୍ତି ।

ରେଖା ହସି ହସି କହିଲା— ଓ, ସେମାନେ ତୁମକୁ ସବୁ ଜଙ୍ଗଲି କହନ୍ତି ! ଦୂର୍ ପାଗଳା, ସେମାନେ ତ ନିଜେ ଜଙ୍ଗଲି !

ଗୋପ ଉତ୍ସାହିତ ହୋଇ କହିଲା— ହଁ, ସେମାନେ ଜଙ୍ଗଲି ଛଡ଼ା ଆଉ କଅଣ ! କାହାର ମଥାରେ ନଡଆ ପିଟିବେ ଦିନ ସାରା ସେମାନଙ୍କର ଏହି ଚିନ୍ତା । ମଝିରେ ମଝିରେ ବିରାଟ ବଡ଼ ଲୋକସବୁ ଆସିଲେ ସେମାନଙ୍କର ପାଦ ଚାଟିଲା ଭଳି ବ୍ୟବହାର କରନ୍ତି, ଆଉ ସେମାନେ ଘରୁ ଚାଲିଗଲା ମାତ୍ରେ ସେମାନଙ୍କୁ ଗାଳି ଫଜିତ କରନ୍ତି । ଭାଉଜ; ଆଜିକାଲି ସେ ଘରେ ଆହୁରି ଅନେକ କାଣ୍ଡ ହେଉଛି ! ସବୁ ତୁମକୁ କହିବି । ଜାଣ ଭାଉଜ, ବଡ ଭାଇ କୁଆଡ଼େ ଆଜିକାଲି ଜୁଆ ଖେଳନ୍ତି, ମଦ ଖାଆନ୍ତି, ବହୁତ ରାତିରେ ଘରକୁ ଫେରନ୍ତି । ଏହି ତ ସେ ଦିନ ଟଳି ଟଳି ଆସି ଅଜ୍ଞାନ ହୋଇ ବିଛଣାରେ ପଡ଼ି ଭୁଲ କଥାସବୁ ବକିବାକୁ ଲାଗିଲେ । ବଡ଼ର ବଡ଼ର କରି ସେ କେତେ ନାମ କହିଗଲେ— ସୁଶୀଳା, ଚମ୍ପା, ପୁଷ୍ପା । ଆହୁରି କେତେ ନାମ । ଜାଣ ଭାଉଜ, ସେ ଦିନ ବଡ଼ ଭାଉଜ କୁଆଡ଼େ ରାତି ସାରା ବସି କାନ୍ଦୁଥିଲେ ।

ରେଖା ଅବାକ ହେଲା—ସତେ ନା କଅଣ ! ବ୍ୟାପାର ଏତେ ଦୂରକୁ ଗଡ଼ି ଗଲାଣି ! ଛାଡ଼, ବାକି କଥା ପରେ ଶୁଣିବି । ଏକ୍ଷଣି ଖାଇବ ଚାଲ ।

ଆଜି ରେଖାର ମନେ ହେଲା, ସତେ ଯେମିତି ତାହାର ଘରର ପ୍ରତ୍ୟେକ କାନ୍ଥ ମୁଖର ହୋଇଛି ।

୯

ଗୋପ ଚନ୍ଦନର ଘରେ ଅଛି । ଦୁଇ ତିନି ଦିନ ଯାଏ ଚନ୍ଦନ ତାହାକୁ କିଛି କହି ନ ଥିଲା । ସେ ତାହାକୁ କିଛି କହିବ ବୋଲି ମନେ ମନେ ଭାବୁଥିଲା, ଏହି ସମୟରେ ରେଖା ତାହାକୁ ଜଣାଇଲା— ଗୋପ ଏଠାରେ ରହୁ । ସେ କୁଆଡ଼େ ତୁମ ପରି ଦେଶର କାମ କରିବାକୁ ଚାହେଁ । ସେ ଆଉ ତୁମ ଭାଇର ଘରକୁ ଫେରିବାକୁ ଚାହେଁ ନା ।

ଚନ୍ଦନ ଖୁସି ହୋଇ ଚୁପ କରି ରହିଲା । କିନ୍ତୁ ତୃତୀୟ ଦିନ ରାତିରେ ଘରକୁ ଫେରି ଆସି ଚନ୍ଦନ ତାହାର ସ୍ତ୍ରୀର ହାତକୁ ଖଣ୍ଡିଏ ଚିଠି ବଢ଼ାଇ ଦେଇ କହିଲା— ଗୋପର ଆଉ ଏଠାରେ ରହିବା ଉଚିତ ନୁହେଁ ।

ରେଖା ଚିଠିଟା ପଢ଼ି ସ୍ତମ୍ଭିତ ହେଲା । ସେ ଆଖିର ଲୁହ ସମ୍ଭାଳି ପାରିଲା ନାହିଁ । ତାହାର ମୁଣ୍ଡ ଘୂରିବାକୁ ଲାଗିଲା । ଠକ ଠକ ସେ ଚଉକିରେ ବସି ପଡ଼ିଲା । ଚିଠିରେ ଗୋକୁଳ ଅନେକ ଏଣୁ ତେଣୁ କଥା ଲେଖି ଶେଷରେ ଅଭିଯୋଗ କରିଛି—ଆଉ ଦୁଇ ବର୍ଷ ପରେ ଗୋପ ରୋଜଗାର କରି ପାରିବ । ଏହି ଲୋଭରେ ତୁ ଗୋପକୁ ଶିଖାଇ ଏଠାରୁ ନେଇ ଯାଇଛୁ ।

ରେଖା ଅବାକ ହୋଇ ଭାବିଲା— ସଂସାରରେ ଏତେ ବଡ଼ ମିଥ୍ୟାବାଦୀ ବି ଅଛନ୍ତି !

ପର ଦିନ ଚନ୍ଦନ ଗୋପକୁ ବହୁତ ବୁଝାଇ ସୁଝାଇ ଭାଇର ଘରକୁ ଫେରିଯିବା ପାଇଁ ରାଜି କରାଇ ପାରିଲା, କିନ୍ତୁ ଏକମାତ୍ର ସର୍ତ୍ତରେ ଯେ ତାହାକୁ ସେଠାରେ ଛାଡ଼ି ଦେଇ ଆସିବା ପାଇଁ ରେଖାକୁ ଗୋପ ସାଙ୍ଗରେ ଯିବାକୁ ହେବ ।

ଗୋଲାପର୍ ଘରେ ପହଞ୍ଚିଲା କ୍ଷଣି ପ୍ରଥମେ ଦେବୀ ରେଖାର ନଜରରେ ପଡ଼ିଲା । ଦେବୀ ସଙ୍ଗେ ସଙ୍ଗେ କହିଲା—ହିଁ, କହୁଛି ପରା । ଭଲ ହେଲା । ଗୋପ ଆମ ସାଙ୍ଗରେ ଝଗଡ଼ା କରି ଚାଲି ଯାଇଥିଲା । ତାହା ନ ହୋଇଥିଲେ କି ତୋର ଦର୍ଶନ ମିଳି ଥାଆନ୍ତା ! ଯେତେ ହେଲେ ଆମେ ତ ତୁମ ପରି ବଡ଼ ଲୋକ ନୋହୁ, କେଉଁ ଗରଜ ପଡ଼ିଛି ଯେ ଆମ ପାଖକୁ ଆସିବ ।

ରେଖା ଦେବୀର କଥା ଶୁଣୁଥିଲା, ଆଉ ତେଣେ ଘରର ଆସ-ବାବପତ୍ର ଆଡ଼କୁ ଅନାଇ ଦେଖୁଥିଲା । ଦେବୀର ଓଠର ରଙ୍ଗ ଖୁବ୍ ଗାଢ଼ ଓ କଦର୍ଯ୍ୟ ଦିଶୁଥିଲା । ତାହାର କଥାକୁ ଗୁରୁତ୍ୱ ନ ଦେଇ ରେଖା ପଚାରିଲା— ମାଆ ଓ ଶ୍ୟାମ କାହାନ୍ତି ?

ଦେବୀ କହିଲା—ତୋର ଫେର୍ ମାଆ ସାଙ୍ଗରେ କି ଦରକାର ! ଗୋପ ସମ୍ବନ୍ଧରେ କିଛି କହିବାର ଥିଲେ ମୋତେ କହ । ଏଥିରେ ମାଆର କିଛି କରିବାର ନାହିଁ ।

ଠିକ୍ ସେତିକି ବେଳେ ଶାଶୁ କେଉଁଠୁ ଆସି ସେଠାରେ ପହଞ୍ଚିଗଲା । ଦୁଧ ଗିଲାସଟା ଦେବୀର ସାମନାରେ ରଖି ସୁନ୍ଦରକୁ କୋଳରୁ ଓହ୍ଲାଇ ଦେଇ ସେ କହିଲା--ବୋହୂ, ତୋର ଏହି ପୁଅଟା ମୋତେ ଜଳେଇ ପୋଡ଼େଇ ମାରିଲା । ଯେତେ ଚେଷ୍ଟା କଲେ ସୁଦ୍ଧା ତାହାକୁ ଦୁଧ ଟିକିଏ ପିଆଇ ପାରିଲି ନାହିଁ । ଖାଲି ଚାହା ଖାଇବ ବୋଲି ଜଗର ଧରିଛି ।

ରେଖା ସୁନ୍ଦରକୁ କାଖେଇ ଦୁଧ ଗିଲାସଟା ଉଠାଇ ନେଇ ଝରକା ପାଖକୁ ଗଲା । ସୁନ୍ଦରକୁ ନିକଟସ୍ଥ ପାର୍କ ଦେଖାଇ ରେଖା କହିଲା— ଏହି ଦେଖ କି ସୁନ୍ଦର ଫୁଲ ଗଛ । ସୁନାଟା ପରା, ଏହି ଦୁଧ ଟିକକ ଖାଇ ଦେ । ମୁଁ ତୋତେ ସେଠାକୁ ନେଇଯିବି । ଏହି ଯେ ଦେଖୁଛୁ ଝୁଲଣା, ସେଥିରେ ତୁ ଆଉ ମୁଁ ବସି ଝୁଲିବା । ବହୁତ

ଉଚ୍ଚକୁ ଉଠିଯିବା, ଆଉ ଉପରେ ସେହି ଆକାଶରୁ ତାରା ଫୁଲସବୁ ତୁଣ୍ଡାଇ ଆଣିବା । ନେ, ସୁନା ପୁଅଟା ପରା, ଦୁଧ ଟିକ ଖାଇ ଦେ ।

ସୁନ୍ଦରକୁ ଦୁଧ ପିଆଇଲା ବେଳେ ଦେଖୀର କଥା ସବୁ ଯାଇ ରେଖାର କାନରେ ବାଜିଲା । ଦେଖୀ ଗୋପକୁ ବକୁଥିଲା— ଆମ ପାଖରେ ତୋ ବାପ-ଅଜା କଅଣ ଗୁପ୍ତ ରଖିଛନ୍ତି ଯେ ଆମେ ଜୀବନ ସାରା ତୁମ ସମସ୍ତଙ୍କୁ ବସାଇ ଗିଳୋଉଥିବୁ । ସବୁ ଭାଇ ମିଶି ତ ଏହି ଜଣେ ଲୋକର ରକ୍ତ ଶୋଷିବା ପାଇଁ ତିଆରି ହୋଇଛ । ଭାରି ତ ଦଉଡ଼ ଯାଇଥିଲୁ ତୋ ସାନ ଭାଇ ପାଖକୁ । ସେମାନେ ମୁହଁରେ ଢେ଼ର କଥା କହନ୍ତି । ରଖନ୍ତୁ ନା ତୁମ ଭିତରୁ ଜଣକୁ । ତାହା ହେଲେ ଯାଇ ଜଣା ପଡ଼ିବ, କେତେ ଧାନରେ କେତେ ଚାଉଳ ହେବ ।

ଶାଶୁ କହିଲା— ବୋହୂ, ତାହାକୁ ଏତେ ବକୁଛ କାହିଁକି ? ଆମ ଭାଗ୍ୟରେ ଅଛି ବୋଲି ସିନା ଗୋଲାପ ଏତେ ଟଙ୍କା ରୋଜଗାର କରୁଛି । ସମସ୍ତଙ୍କର ଶାସନ କର୍ତ୍ତା ତ ଭଗବାନ, ତୁ ନୋହୁଁ କି ମୁଁ ବି ନୁହେଁ ।

ଦେଖୀ କହିଲା — ମାଆ, ତୁମେ ଖୁବ୍ ବନେଇ ଚୁନେଇ କଥା କହି ପାର । ଦେଖିପାରୁଛ ତ, ତୁମ ସମସ୍ତଙ୍କ ପଛରେ କେତେ ଟଙ୍କା ପାଣି ପରି ଖରଚ ହୋଇ ଯାଉଛି ।

— ଆମ ପାଇଁ କେତେ ଟଙ୍କା ଖରଚ ହେଉଛି, ବୋହୂ ? ଦୁଇ ଓଳି ଗୁର ଖଣ୍ଡ ଲେଖାଏଁ ରୋଟି ତ, ଆଉ କଅଣ ! ଯଦି ଅଧିକ ଖରଚ ହେଉଥାଏ, ତାହାର ମଦ ଓ ଅନ୍ୟ ସବୁ ବ୍ୟାପାରରେ ହେଉଥିବ ।

— ଆମ ଖିଆପିଆ ଉପରେ ତ ତୁମର ସବୁ ନଜର ! ଗୁର ଆଜୁ ଧାର ଉଧାର କରି ଆଣି ତୁମମାନଙ୍କୁ ଗିଳାଉଛି ନା, ସେଇଥି

ପାଇଁ ଆଜ ଏତେ କଥା ଶୁଣାଉଛ । ହଁ, ରେଖା, ତୋତେ ବି କହି ଦେଉଛି, ଗୋପର ଆଉ ଏ ଘରେ ରହିବା ହେବ ନାହିଁ । ମୁଁ ଏ ବୁଢୀଟାକୁ ବସେଇ ବସେଇ ଆଉ ଗିଳେଇ ପାରିବି ନାହିଁ ।

ଗୋପ ବୃଦ୍ଧ ଦୃଷ୍ଟିରେ ବଡ଼ ଭାଉଜ ଆଡ଼କୁ ଅନାଇଲା । ରେଖା ତାହାକୁ ଟାଣି ଟାଣି ଶାଶୁର ଘରକୁ ନେଇଗଲା । ଶାଶୁ ରେଖାର ହାତ ଧରି କହିଲା— ଶୁଣିଲୁ ବୋହୂ ତାହାର କଥା ? ତାହା ପରି ଝିଅ ସାଙ୍ଗରେ ମୋ ଗୋଲାପର ବିବାହ ହେବା ଠାରୁ ବରଂ ତାହାର ପାଗଳ ହେବା ଖୁବ୍ ଭଲ ଥିଲା । ଗୋଲାପ ନିଜେ ମୋତେ କହିଲା, ଆସନ୍ତା ମାସ ମଟର କିଣିବ, ଆଉ ଏହି ମହାରାଣୀ କହୁଛି କଅଣ ନା ଆମରି ପାଇଁ କୁଆଡ଼େ ସେମାନେ ଦେଉଳିଆ ହୋଇ ଯାଉଛନ୍ତି ।

ଶାଶୁ ସାଙ୍ଗରେ ଏହି ଧରଣର ଝଗଡା ରେଖାକୁ ଆଦୌ ପସନ୍ଦ ହେଲା ନାହିଁ ।ଠିକ୍ ସେତିକି ବେଳେ ଗୋଲାପ ମାଆ ପାଖକୁ ଆସି କହିଲା— ମୁଁ ପରା ଠିକ୍ ଜାଣିଥିଲି, ଚନ୍ଦନ ତୋତେ ଦିନ ତିନଟା ବି ରଖିବ ନାହିଁ ।

ରେଖାକୁ ଏହି କଥା ପଦକ ଭାରି ବାଧିଲା । ଦେଖି ସ୍ୱାମୀର ପଛରେ ଠିଆ ହୋଇ କହିଲା— ପକେଇଲା ଛେପକୁ ଆଉ ଚାଟିବ ନାହିଁ । ଆମରି ଭଲେ ହେଲେ ଆପତ୍ତି ନାହିଁ, ଗୋପ ସେମାନଙ୍କ ପାଖରେ ରହି ରୋଜଗାର କରି ସେମାନଙ୍କୁ ଯେତେ ପାରେ ସେତେ ଟଙ୍କା ଦେଉ ।

ରେଖା ତାହା ସହି ନ ପାରି କହିଲା— ଏକ୍ଷଣି ତ ତାହାର ରୋଜଗାର କରିବାର ପ୍ରଶ୍ନ ଉଠୁ ନାହିଁ । ଏକ୍ଷଣି ତାହା ପଛରେ ଟଙ୍କା ଢାଳିବା ଦରକାର, ଯଦ୍ଵାରା ତାହାର ପଡ଼ାଶୁଣା ଭଲ ଭାବରେ ହୋଇ ପାରିବ ।

ଦେଖା କହିଲା— ବାଃ, ତୁ ତ କମ ଗୁଣିଆ ନୋହୁ ! ଦୁଇ ବର୍ଷ ପରେ ଯେ ରୋଜଗାର କରି ଟଙ୍କା ଆଣିଦେବ, ତୁମେ ତାହାର ପାଠ ପଢାର ଖରଚ ବି ତୁଲାଇବ ନାହିଁ । ସବୁ ଭାଇଙ୍କର ଲେଖା ପଢ଼ା ଓ ସେମାନଙ୍କୁ ମଣିଷ କରିବାର ଦାୟିତ୍ୱ କଥଣ ଜଣେ ଠିକା ନେଇଛୁ !

ଗୋଲପ କହିଲା— ବେଶ୍, ଯେତେ ବେଳେ ସେ ରୋଜଗାର କରିବ, ତୁମେ ସବୁ ନିଅ । ଦୁଇ ବର୍ଷ ଭିତରେ ତ ସେ ମାଟ୍ରିକ ପାଶ୍ କରିବ, ତାପରେ ନିଶ୍ଚୟ କିଛି ଚାକରି ବାକରି କରିବ । ମାଆ ଓ ସାନ ଭାଇ ପାଇଁ ତୁମେ ପଇସାଟିଏ କିଛି ନ ଦେଲ ନାହିଁ ।

ରେଖା ଠିକ୍ ଭାବରେ ବୁଝି ପାରିଲା ନାହିଁ, କପରି ସେଠାରେ ଠିଆ ହୋଇ ସେ ଏହି କଥାସବୁ ସହିବ । ସେ ଗୋପକୁ ଏତେ ଦିନ ହେଲା ଗୋଟିଏ ସାଧାରଣ ପିଲା ପରି ଦେଖି ଆସିଛି । ତାହାର ରୋଜଗାରର କଥା ସେ କେବେ ହେଲେ ମନରେ ଭାବି ନାହିଁ । ଶେଷରେ ସେ କହିଲା—ଯଦି ଗୋପର ରୋଜଗାରର ଟଙ୍କା ସମ୍ବନ୍ଧରେ ଆପଣମାନେ ଏତେ ଚିନ୍ତିତ ହେଉଛନ୍ତି, ତାହା ହେଲେ ତାହାକୁ ନିଜ ପାଖରେ ରଖନ୍ତୁ ।

ଦେଖା ଦୁଇ ହାତ ହଲାଇ ହଲାଇ କହିଲା—ନାହିଁରେ ବାବା, ଏକ୍ଷଣି ଯେଉଁମାନେ ଅଛନ୍ତି ସେମାନଙ୍କୁ ନେଇ ତ ଆମେ ସମ୍ଭାଳି ପାରୁ ନାହୁଁ । ଫେର୍ ବୋଝ ଉପରେ ନଳିତା ବିଡ଼ା ଆଉ ଆମ ଉପରେ ଲଦ ନାହିଁ । ସେମାନଙ୍କୁ ପୋଷିବା ଏତେ ସହଜ କଥା ନୁହେଁ । ଆଜ ଜାମା ପେଣ୍ଟ ନାହିଁ ତ କାଲ ଜୋତା ନାହିଁ, ପହିଲି ଦିନ ଦରମା, ତା ପର ଦିନ ଆଉ କିଛି, ଏମିତି ବରାବର ଲାଗି ରହିଥିବ !

ତହୁଁ ଗୋପ କହିଲା— ଯଦି ମୋତେ ଏଠାରେ ରଖିବାକୁ ନ ଚାହୁଁଛ, ରଖ ନାହିଁ । କିଏ ବା ତୁମ ପାଖରେ ରହିବାକୁ ଚାହୁଁଛି ?

କେତେ ଲୋକ ତ ଫୁଟପାଥରେ ଦିନ କାଟୁଛନ୍ତି, ନୋହିଲେ ମୁଁ ବ ସେମିତି କଟାଇବ ।

ଗୋଲପ ଘରଟର ଜଳ ଯାଇ ଥର ଥର କହିଲା — ଓ, ଏଯାଏ ତେଜ କମି ନାହିଁ । ଦେଖୁଛି, ତିନି ଦିନ କାଳ ଘୂରି ଘୂରି ବ ତେଜ ଠିକ୍ ଅଛି । ଯାଆ ନା, ଯାଆ, ଫୁଟପାଥରେ ମରିବୁ ଯାଆ । ତୋ ପରି ଭାଇକୁ ପୋଷିବା ଅପେକ୍ଷା ବରଂ ଗୋଟାଏ ଜାନୁଆରକୁ ପୋଷିବା ଢେର୍ ଭଲ ।

ଆଉ ସହ୍ୟ ନ ପାରି ଗୋଲପର ମାଆ କହିଲା—ଗୋଲପ, ଧରିକୁ ସବୁ ମଣ୍ଡନା । ଟିକିଏ ବୁଝି ସୁଝି ଚାଲ, ବାପା । ଆଜ ତୋର ଯେଉଁ ଧନ ସମ୍ପତ୍ତି ହୋଇଛି, ହୁଏତ ଆମ ସମସ୍ତଙ୍କ ଭାଗ୍ୟର ଜୋରରୁ ତୁ ତାହା ପାଇଛୁ । ତୁ ଯେତେ କଥା କୁହ ପଛକେ, ମୋର ଅନ୍ୟ ଗତି ନାହିଁ । ସେଥି ପାଇଁ ତ ମୁଁ ଏଠାରେ ପଡ଼ି ରହିଛି । ନୋହିଲେ କେଉଁଠି ଟିକିଏ ଆଶ୍ରୟ ପାଇଥିଲେ ଝିଅ ଦୁଇଟିଙ୍କୁ ନେଇ ଚାଲି ଯାଇ ଥାଆନ୍ତି ।

ରେଖା ବୁଝି ପାରିଲା, ଏତାଦୃଶ ପରିସ୍ଥିତିରେ ଗୋପକୁ ସେଠାରେ ଛାଡ଼ି ଦେଇ ଚାଲିଯିବା ମୋଟେ ଉଚିତ ନୁହେଁ । ତେଣୁ ସେ ତାହାକୁ ନେଇ ଘରକୁ ଫେରିଗଲା ।

ଗୋପ ଯାଉଁ ଯାଉଁ କହିଲା—ଦେଖିଲ ତ ଭାଉଜ, ସେମାନେ କି ଧରଣର ଲୋକ । ହାତରେ କିଛି ଟଙ୍କା ହୋଇଛି ବୋଲି ସେମାନଙ୍କର କେତେ ଦମାକ । ନିଜର ସଉକ ମେଣ୍ଟାଇବା ପାଇଁ ଦରକାର ହେଲେ ସେମାନେ ଟଙ୍କା ଧାର କରନ୍ତି । କିନ୍ତୁ ଆମର ସାମାନ୍ୟ ଜାମା ପେଣ୍ଟ କଥା ଉଠିଲେ, କହନ୍ତି ଯେ ସେମାନେ ଦେଉଳିଆ ହୋଇ ଯାଉଛନ୍ତି ।

ଗୋପର କଥା ଶୁଣି ରେଖା ମନେ ମନେ ହସିଲି—ଦେଖ, ପିଲ ବକଟେ, ସେ ଫେର୍ କେତେ ପୋଖତ କଥା କହୁଛି । ରେଖା ଭାବିଲା, ସତରେ ସେମାନଙ୍କ ପରିବାରରେ ଘୂଣ ଧରିଲଣି ।

୧୦

ଗୋପ ଆସି ଚନ୍ଦନର ଘରେ ରହିଲାରୁ, ରେଖାର ନିଃସଙ୍ଗ ଜୀବନର ଅବସାନ ଘଟିଲି । ଯେତେ ବେଳେ ଗୋପ ତାହାର ଭାଉଜ ପାଖରେ ବସି ବିଦ୍ୟାଳୟର ଗପ କରେ, ସେତେ ବେଳେ ରେଖାର ନିଜ ଗ୍ରାମ ଜୀବନର କଥା ମନେ ପଡ଼େ । କିଛି ଦିନ ପରେ ଏହି ଆନନ୍ଦ ସାଙ୍ଗକୁ ଅର୍ଥର ଅଭାବ ମଧ୍ୟ ପ୍ରକଟିତ ହେଲା ।

ଦିନେ ରେଖା ବସି ଗୋପର ଚିରିଯାଇଥିବା ଲୁଗା ସିଲେଇ କରୁଥିଲା । ଏହି ସମୟରେ ଗୋପ ବିଦ୍ୟାଳୟରୁ ଫେରି ଆସି ଜଣାଇଲା—ଭାଉଜ, ଦେଖୁଛ, ଜୋତାଟା କି ରକମ ଛିଣ୍ଡି ଗଲଣି ! ରେଖା ଦେଖିଲା, ଜୋତାର ତଳ ଏକାବେଳେ ଉଡ଼ି ଯାଇଛି । ବହିର ମୁଣିଟା ରଖି ଦେଇ ଗୋପ ଖଟ ଉପରେ ବସି ପଡ଼ିଲା ।

ରେଖା ପଚାରିଲା—କିରେ, ଆଜି ଖାଇବୁ ନାହିଁ କି ? ବସି ପଡ଼ିଲୁ କାହିଁକି ?

ଗୋପ ତଳକୁ ମୁହଁ ପୋତି ଗୋଡ଼ ହଲାଉ ହଲାଉ କହିଲା ଭାଉଜ, ମୋତେ ଗୋଟାଏ ଛତା କିଣି ନ ଦେଲେ ହେବ ନାହିଁ । ଏହି ଛତାର ବେଣ୍ଟଟା ଭାଙ୍ଗି ଯାଇଛି, ଆଉ କେଉଁଟା କଣ୍ଟା ବି ବାଙ୍କି ଗଲଣି । ମୋ ସାଙ୍ଗମାନେ ମୋତେ 'ବୁଢ଼ା' ବୋଲି କହି ଚିଡ଼ାଉଛନ୍ତି । ଅନୁରୋଧ ଜଣାଇଲା ବେଳେ ଗୋପର ଆଖି ଲୁହରେ ଛଳଛଳ ହେଲା । ଏହା ଦେଖି ରେଖାକୁ ଦୁଃଖ ଲାଗିଲା । ସେ ଉଠି ଯାଇ ଗୋପକୁ ଆଦର କରି କହିଲା— ତୁ ଦଶମ ଶ୍ରେଣୀରେ ପଢ଼ୁଛୁ, ତେବେ ବି ତୁ ମଝିରେ ମଝିରେ ଗ୍ରେଟ ଛୁଆଙ୍କ ପରି

ତୋର କଥା କହୁଛୁ । ଧୀରେ ଧୀରେ ସବୁ ଜିନିସ ହେବ । ଯେମାନେ ତୋତେ ଚିଡ଼ାଇଲେ, ତୁ ବା ସେମାନଙ୍କ କଥାରେ ରାଗିବୁ କାହିଁକି ?

ତା ପରେ ରେଖା ଗୋପକୁ ବହୁତ ଆଦର କରି ନେଇ ଯାଇ ଖୁଆଇଲା ।

ପର ଦିନ ଗୋପ ବିଦ୍ୟାଳୟକୁ ଯାଇଥିଲା । ରେଖା ଘରେ ଏକା ଥିଲା । ଡାକ ପିଅନ ଆସି ଖଣ୍ଡିଏ ଚିଠି ଦେଲା । ଚିଠି ପଢ଼ି ରେଖାର ମଥା ଘୂରିବାକୁ ଲାଗିଲା । ଶୀଳବନ୍ତୀର ପରିବାରର ଏ କି ଅବସ୍ଥା ! ଏତେ ବଡ଼ ଗୋଟାଏ ସ୍ୱଚ୍ଛଳ ସଂସାର ଭାଙ୍ଗି ପଡିବାକୁ ବସିଛି ! ତାହାର ମୁଣ୍ଡ ଗରମ ହୋଇଗଲା । ସେତିକି ବେଳେ ଗୋପ ବିଦ୍ୟାଳୟରୁ ଫେରିଲା । ସେ ଗୋପକୁ ଗିଲାସେ ପାଣି ଆଣିବାକୁ କହିଲା ।

ଠିକ୍ ସେତିକି ବେଳେ ଚନ୍ଦନ ଘରେ ପ୍ରବେଶ କରି ରେଖାର ହାତକୁ ପାଣି ଗିଲାସଟିଏ ବଢ଼ାଇ ଦେଲା । ଚନ୍ଦନ ଲକ୍ଷ୍ୟ କଲା, ରେଖାର ଆଖି ଲୁହରେ ଛଳ ଛଳ । ସ୍ୱାମୀକୁ ଦେଖି ପାରି ରେଖା ସଙ୍ଗେ ସଙ୍ଗେ ଶୀଳବନ୍ତୀର ଚିଠିଟା ତାହାର ହାତକୁ ବଢ଼ାଇ ଦେଲା । ଚନ୍ଦନ ନିବିଷ୍ଟ ମନରେ ଚିଠିଟି ଆମୂଳ ଚୂଳ ପଢ଼ିଲା । ଦେଶ ବିଭାଜନ ଫଳରେ କିପରି ଏକ ସମ୍ପନ୍ନ ପରିବାରର ଅର୍ଥ-ନୈତିକ ଗଣ୍ଠି ଭାଙ୍ଗି ଯାଇଛି ତାହାର ବାସ୍ତବ ଓ କରୁଣ ଚିତ୍ର ସେହି ଚିଠିରେ ପରିଷ୍କାର ପ୍ରକଟିତ ହୋଇଥିଲା ।

କିଛି କ୍ଷଣ ପରେ ଚନ୍ଦନ ରେଖାକୁ ପଚାରିଲା—ତାହା ହେଲେ ଶୀଳବନ୍ତୀର ଚିଠି ପଢ଼ି କଅଣ ତୁମେ ଏତେ ଚିନ୍ତିତ ହୋଇ ପଡ଼ିଛ ?

ସେହି ଦିନ ରାତି ସାରା ପ୍ରାକୃତିକ ଦୁର୍ଯୋଗରେ ସମଗ୍ର ଅଞ୍ଚଳଟା ଓଲଟ ପାଲଟ ହେଲା । ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ ରେଖାର ଆଖି

ସାମନାରେ ଭସି ଉଠିଲା ତାହାର ଜଣାଶୁଣା ଲୋକଙ୍କର ଦୁଃଖ ଦୁର୍ଦ୍ଦଶାର କରୁଣ ଚିତ୍ର । ଶୋଇ ପଡ଼ିଲେ ସୁଦ୍ଧା ସେଥିରୁ ତାହାର ନିସ୍ତାର ମିଳିଲା ନାହିଁ । ସେ ସ୍ୱପ୍ନ ଦେଖିଲା, ଶୀଲବନ୍ତୀର ପୁଅ ଝିଅ-ମାନେ ମୁଠାଏ ଭାତ ଲାଗି କାନ୍ଦି କାନ୍ଦି ଭୂଇଁରେ ଗଡ଼ି ଯାଉଛନ୍ତି । ଏଣେ ଗୋପର ଛିଣ୍ଡା ପେଣ୍ଟ, ଭଙ୍ଗା ଛତା, ଆହୁରି କେତେ କଅଣ ।

ପର ଦିନ ସକାଳେ ରେଖା ସବୁ କାମ ଦାମ ସାରି ଚନ୍ଦନର ବହିର ଆଲମାରୀ ଘାଣ୍ଟିଲା । ଦିନେ ସେ ଯେଉଁ ବହିଗୁଡ଼ିକୁ ଆବର୍ଜନା ପରି ଉପେକ୍ଷା କରୁଥିଲା, ଆଜି ସେଗୁଡ଼ିକୁ ସେ ଅତି ଯତ୍ନରେ ପୋଛି ପୋଛି କରିବାକୁ ଲାଗିଲା । ଚନ୍ଦନ ଗାଧୋଇ ଆସି ବିସ୍ମୟିତ ଦୃଷ୍ଟିରେ ତାହା ଆଡ଼କୁ ଅନାଇ କହିଲା— ଏ କଅଣ ! ଆଜି ବହି ସବୁ ପୂଜା ହେବ ନା କଅଣ ?

ରେଖା କିଛି ଜବାବ ନ ଦେଇ ପୁଣି ଆଲମାରୀ ଓ ବହିର ଧୂଳି ଲୁଗା କାନିରେ ଝାଡ଼ିବାକୁ ଲାଗିଲା ।

ଭୋଜନ ସାରି ମିଲକୁ ଯିବା ବେଳେ ଚନ୍ଦନ କହିଲା—ଆଜି ଚାରିଟା ବେଳକୁ ମୋର କେତେ ଜଣ ବନ୍ଧୁ ଆସିବେ, ଏଠାରେ ଗୋଟିଏ ଘରୋଇ ବୈଠକ ବସିବ ।

ରେଖା ପଚାରିଲା— କେତେ ଜଣ ଆସିବେ ?

— ତୁମକୁ ବେଶୀ କିଛି ବ୍ୟବସ୍ଥା କରିବାକୁ ପଡ଼ିବ ନାହିଁ । ଖାଲି ବାରଚଉଦ କପ ଚାହା ।

— ମୋତେ କଅଣ କରିବାକୁ ହେବ କି ନ ହେବ, ତାହା ମୁଁ ଭଲ ଭାବରେ ଜାଣେ ।

— ହେଉ, କାର୍ଯ୍ୟ କ୍ଷେତ୍ରରେ ଦେଖା ଯିବ ।

ରେଖାର ନିଜ ଶୈଶବ କାଳର କଥା ମନେ ପଡ଼ିଲା । ସେତେ ବେଳେ ତାହାର ବାପ ଘରେ ପ୍ରାୟ ନିତି ମଉଜ ମଜଲିସ ଚାଲିଥିଲା ।

ବିଦ୍ୟାଳୟରୁ ଫେରି ଗୋପ ତାହାର ଭାଇ ଓ ଭାଉଜଙ୍କ ସାମନାରେ ମୁହଁ ଓହଳାଇ କହିଲା— ଆଜି ମୋତେ ଯେ କୌଣସି ମତେ ଗୃହ ଖଣ୍ଡ ଖାତା କିଣି ଦେବାକୁ ହେବ । ଆଜି ନିଶ୍ଚୟ । ବିଦ୍ୟାଳୟରେ ଗୁରୁଜୀ ମୋତେ ଆଜି ଢେର୍ ବକିଲେ ।

ଚନ୍ଦନ ଚାଲିଗଲା । ରେଖା ଗୃହ ଖଣ୍ଡ ଖାତାର ପଇସା ଗୋପକୁ ଦେଇ ହିସାବ କରି ଦେଖିଲା ଯେ ବଜାର ଖରଚ ପାଇଁ ପଇସା ନିଅଣ୍ଟ ହେଲା । ତହୁଁ ସେ ମନେ ମନେ ଭାବିଲା, ଅର୍ଥ ଉପାର୍ଜନର ଆଉ କିଛି ବାଟ ବାହାର ନ କଲେ ଗୋପର ପଢ଼ା ଶୁଣା ଚଳାଇବା ସେମାନଙ୍କ ପକ୍ଷରେ ଆଉ ସମ୍ଭବ ହେବ ନାହିଁ ।

## ୧୧

ମୁଷଳ ଧାରରେ ବର୍ଷା ହେଉଥିଲା । ରେଖା ମାଟିଙ୍ଗା ଷ୍ଟେସନରେ ଓହ୍ଲାଇ ପ୍ରତୀକ୍ଷାଗାରରେ ଠିଆ ହୋଇ ପ୍ରକୃତିର ରୁଦ୍ର ରୂପ ଦେଖୁଥିଲା । ମାଟିରେ ପାଣି ଜମୁଥିଲା । ଆକାଶରୁ ମେଘ ପଡ଼ିବା ସଙ୍ଗେ ସଙ୍ଗେ ପାଣିରେ ବୁଦ୍‌ବୁଦ ସୃଷ୍ଟି ହେଉଥିଲା ଏବଂ ପର ମୁହୂର୍ତ୍ତରେ ମିଳାଇ ଯାଉଥିଲା ।

ମେଘର ବୈଶିଷ୍ଟ୍ୟ ଦେଖୁଁ ଦେଖୁଁ ରେଖାର ଘର କଥା ଓ ସାହି-ପଡ଼ିଶାଙ୍କ କଥା ମନେ ପଡ଼ିଲା । ସେ ଭାବିଲା, ଏହି ସମୟରେ ତାହାର ଖଣ୍ଡିଏ ଛତା ଥିଲେ ମନ୍ଦ ହୋଇ ନ ଥାଆନ୍ତା । କିନ୍ତୁ ଟଙ୍କା ନ ଥିଲେ ଛତା ବା ଆସିବ କେଉଁଠୁ ! ଟଙ୍କା ପାଇଁ ତ ଗୋଟାଏ ଚାକିରି ଦରକାର । ଏହିପରି ଭାବରେ କେତେ ପରିବାରରେ କେତେ ରକମ ଜିନିଷର ପ୍ରୟୋଜନ ରହିଛି । ସେହି ମୁହୂର୍ତ୍ତରେ ରେଖାର ମନେ ହେଲା, ପୃଥିବୀର ହଜାର ହଜାର ମଣିଷ ସବୁବେଳେ ନିଜର ଅଭାବ ଅନାଟନ କଥା ଭାବୁଛନ୍ତି ।

ମେଘ ଗୁଡ଼ୁଡ଼ିଲା । ରାସ୍ତା ଉପରେ ପାଣି ଠିଆ ହୋଇଥିଲା । ରେଖା ବହୁତ କଷ୍ଟରେ ଘରକୁ ଫେରିଗଲା ।

ରାତିରେ ଚନ୍ଦନକୁ ଖାଇବାକୁ ଦେଇ ରେଖା କହିଲା— ଜାଣ, ମୁଁ ଆଜି ଚାକିରିର ସନ୍ଧାନରେ ବାହାରିଥିଲି ?

ଚନ୍ଦନ ଅବାକ ହେଲା— ତୁମେ ?

—ହଁ, ମୁଁ । ଅବାକ ହେଉଛ କାହିଁକି ?

ନା, ଏମିତି । କଅଣ ହେଲା ? — ଚନ୍ଦନ ପଚାରିଲା ।

ରେଖା ମୁହଁ ଓଲଟାଇ ଜବାବ ଦେଲା—କଅଣ ଆଉ ହେବ ? ମୋର ଉପସ୍ଥିତିରେ ଜଣେ ଅଫିସର ଅନ୍ୟ ଜଣକୁ ଇଂରାଜୀରେ କହିଲା— ଏହି ଶରଣାର୍ଥୀମାନଙ୍କ ଯୋଗୁଁ ଏଠାକାର ଲୋକେ ବେକାର ହୋଇ ବୁଲୁଛନ୍ତି । ଏମାନଙ୍କର ପ୍ରତ୍ୟେକଙ୍କ ମୁଖରୁ ଶୁଣିବ, ଦେଶରେ କୁଆଡ଼େ ଏମାନଙ୍କର ଜମିଦାରୀ ଲମ୍ବା ବଡ଼ ବଡ଼ ବ୍ୟବସାୟ ଥିଲା, ଯେତେ ସବୁ ଖାଲି କାପୁରୁଷ ଦଳ । ଏସବୁ କଥା ଶୁଣି ମୋର ମିଜାଜ ବିଗିଡ଼ି ଗଲା । ମୁଁ ବି ସେମାନଙ୍କୁ ମୋ ତୁଣ୍ଡକୁ ଯାହା ଆସିଲା ମୁହେଁ ମୁହେଁ ବତାଇ ଦେଲି । ସେତେ ବେଳେ ମୁହଁ ମୁଲଜାକୁ ଖାତିର କଲି ନାହିଁ ।

ଚନ୍ଦନ ଲକ୍ଷ୍ୟ କଲା, ରେଖା ଦେଶର ସମସ୍ୟାସବୁ ଗମ୍ଭୀର ଭାବରେ ଅନୁଧାବନ କରିବାକୁ ଚେଷ୍ଟା କରୁଛି । ଖାଇ ସାରି ଆଁ ଉଁ ଆଁ ଉଁ ସେ କହିଲା—ଜାଣେ, ରେଖା, ତୁମେ ବଡ଼ ଘରର ଝିଅ । ତଥାପି ତୁମେ ଚାକିରି ଖୋଜୁ ଥିବାରୁ, ମୁଁ ଗୋଟିଏ ଚାକିରିର ସନ୍ଧାନ ଦେଉଛି । ଅନ୍ଧେରୀରେ ଗୋଟିଏ ଗେଞ୍ଜି ଓ ସୋଏଟରର କାର-ଖାନାରେ ଚାକିରି ଖାଲି ଅଛି । ଠିକଣା ଦେଉଛି । ପଚିଶ ତାରିଖ ଭିତରେ ଦରଖାସ୍ତ ଦେଇ ପାର ।

ଏହା ଶୁଣି ରେଖା ଈଷତ୍ ଉତ୍ତେଜିତ ସ୍ୱରରେ କହିଲା— କଅଣ କହିଲ ତୁମେ ! ଏଇଥି ପାଇଁ କଅଣ ମୁଁ ମାଟ୍ରିକ ପାଶ କରିଥିଲି ! ଶେଷକୁ ଗୋଟାଏ କାରଖାନାରେ ଯାଇ ଗେଞ୍ଜି ଆଉ ସୋଏଟର ତିଆରି କରିବି !

ଗୋପ ନିଜର ବହିଗୁଡ଼ା ସଜାଡ଼ୁ ସଜାଡ଼ୁ କହିଲା— ଭାଉଜ, ଯଦି କାଲି ସକାଳେ ଆଜିକାପରି ମୁଷଳ ଧାରାରେ ବର୍ଷା ହୁଏ, ତାହାହେଲେ ମୁଁ ବିଦ୍ୟାଳୟକୁ ଯାଇ ପାରିବି ନାହିଁ । ଆଜି ଯେଉଁ ପ୍ରଚଣ୍ଡ ତୋଫାନ ହେଲା ସେଥିରେ ଭଙ୍ଗା ଛତାଟା ଏକାବେଳେ ଭାଙ୍ଗିଗଲା । ଜାମା ପେଣ୍ଟ ସବୁ ମଧ୍ୟ ଓଦା ହୋଇଯାଇଛି । କାଲି କଅଣ ପିନ୍ଧିକରି ଯିବି ?

ବହୁତ ବେଳଯାଏ ପାରିବାରିକ ସମସ୍ୟାର କଥା ଚିନ୍ତା କରି ରେଖା ସ୍ଥିର କଲା ଯେ ଗୋପକୁ ପାଠ ପଢ଼ାଇବା ସକାଶେ ତାହାକୁ ଯେ କୌଣସି ଗୋଟାଏ ଚାକିରି କରିବାକୁ ପଡ଼ିବ ।

ପ୍ରାୟ ସପ୍ତାହେ ପରେ । ସେ ଦିନ ଚନ୍ଦନ ଘରକୁ ଫେରୁଁ ଫେରୁଁ ବହୁତ ରାତି ହେଲା । ଭୋଜନ ସମୟରେ ରେଖା ହସି ହସି ଚନ୍ଦନକୁ ଜଣାଇଲା— ଗୋଟାଏ ସୁଖବର ଅଛି ।

ଚନ୍ଦନ ବି ତଦ୍ରୂପ ସହାସ୍ୟ ମୁଖରେ କହିଲା— ତୁମର ସୁଖବର ମାନେହିଁ ତ ମୋର ସୁଖବର । ଆରେ, ତୁରନ୍ତ କହିଦିଅ ନା ।

—ତୁମର ସେହି ଅନ୍ଧେରୀର କାରଖାନାରେ ନବେ ଟଙ୍କା ଦରମାରେ ଖଣ୍ଡିଏ ଚାକିରି ପାଇଛି ।

ସତେ ?— ହସି ହସି ଚନ୍ଦନ ପଚାରିଲା ।

— କଅଣ ? ବିଶ୍ୱାସ ହେଉ ନାହିଁ ବୋଧ ହୁଏ ? ସତ, ସତରେ ଚାକିରିଟିଏ ମିଳିଛି ।

ବିଛଣାରେ ଶୋଇରହି ଚନ୍ଦନ ପ୍ରିୟତମା ପତ୍ନୀ ରେଖାକୁ ପାଖକୁ ଟାଣିନେଲା । ରେଖା ସ୍ୱାମୀର ଚଉଡ଼ା ଗ୍ରୀବ ଉପରେ ମୁଖ ରଖି କ୍ଷୀଣ ସ୍ୱରରେ କହିଲା— ମୋର ଧାରଣା ଥିଲା, ତୁମେ ବୋଧ ହୁଏ କେବଳ ବାହାରର ଲୋକଙ୍କ କଥା ଚିନ୍ତା କର, ଆଉ ଘରକୁ ଫେରିଲେ ତୁମର ହୃଦୟ ନାମକ ବସ୍ତୁଟି ହଜି ଯାଏ ।

ସଙ୍ଗେ ସଙ୍ଗେ ଚନ୍ଦନ ପଚାରିଲା—ଆଉ ଏବେ ତୁମେ କଅଣ ମନେ କରୁଛ ?

ରେଖା ଅତି ଆନନ୍ଦରେ ହସି ହସି ପ୍ରକାଶ କଲା— ଏକ୍ଷଣି ମୋର ମନେ ହେଉଛି, କେବଳ ବାହାରର ହଜାର ହଜାର ଲୋକଙ୍କ କଥା ନୁହେଁ, ନିଜ ଘରର ଲୋକଙ୍କ କଥା ମଧ୍ୟ ତୁମେ ଭାବ । ତୁମ ହୃଦୟ ହିମାଳୟ ପରି ଉଚ୍ଚ, ଆଉ ସମୁଦ୍ର ପରି ବିଶାଳ ।

## ଜୋହାନେସ ଭିଲହେଲମ ଜେନସେନ

# ଦୀର୍ଘ ଯାତ୍ରା

ପୂର୍ବ କାଳ । ସେତେବେଳେ ଉତ୍ତର ଦିଗରୁ ତୁଷାର ପ୍ରବାହ ବହିବା ଆରମ୍ଭ ହୋଇ ନ ଥିଲା ।

ଆଜି କାଲି ଯେଉଁଠି ୟୁରୋପ ମହାଦେଶ ସରଗରମ ହୋଇଛି, ସେତେବେଳେ ସେହି ସବୁ ଅଞ୍ଚଳରେ ବଣ ମଣିଷସବୁ ଦଳ ଦଳ ହୋଇ ଘୂରି ବୁଲୁଥିଲେ । ସେମାନେ ଭୟରେ ଲୁଚି ରହୁଥିଲେ । ଖାଲି ବଣ ଜଙ୍ଗଲର ହିଂସ୍ର ଜନ୍ତୁ ଜାନୁଆରଙ୍କ ଡରରେ ସେମାନେ ଛପି ଛପି ବୁଲୁ ନ ଥିଲେ, ଆଦିମ ବର୍ବର ବନ୍ୟ ଦଳପତିମାନଙ୍କର ନିର୍ମମ ହିଂସ୍ରତାରେ ସେମାନେ ସଦା ସର୍ବଦା ଥରହର ହେଉଥିଲେ ।

ସେହି ଭୟାର୍ତ୍ତ ଭ୍ରାମ୍ୟମାଣ ବଣ ମଣିଷଙ୍କର ଗୋଟିଏ ଦଳରେ ଦିନେ ଶିଶୁଟିଏ ଜନ୍ମ ହେଲା । ଦିନକୁ ଦିନ ବଢ଼ି ବଢ଼ି ଶିଶୁଟି ବାଳକ ହେଲା । ମାତ୍ର ବାଳକଟିର ଆକୃତି ଓ ପ୍ରକୃତି ଟିକିଏ ଭିନ୍ନ ଧରଣର ହେଲା, ଦଳ ଠାରୁ ଏକାବେଳେ ଭିନ୍ନ ଓ ସ୍ୱତନ୍ତ୍ର ।

ସେହି ବିଶାଳ ଜଙ୍ଗଲ ଭିତରେ 'ଗୁଣାଙ୍ଗ ଏପି' ନାମରେ ଗୋଟିଏ ପ୍ରକାଣ୍ଡ ଆଗ୍ନେୟଗିରି ଥିଲା । ସେତେବେଳେ ସେଥିରୁ ଅଗ୍ନ୍ୟୁତ୍ପାତ ନ ହେଉଥିଲେ ସୁଦ୍ଧା, ତାହା ଭିତରୁ ନିଆଁ ପୂରାପୂରି ଲିଭି ଯାଇ ନ ଥିଲା ।

ବାଳକଟି ଏକା ଏକା ଏଣେ ତେଣେ ଘୂରି ବୁଲେ । ବେଳେ ବେଳେ ଆଗ୍ନେୟଗିରିର ଶିଖରକୁ ଉଠିବାକୁ ତାହାର ଇଚ୍ଛା ହୁଏ । ସେ ଆଗେଇ ଯାଏ ଏବଂ ଶିଖର ଆଡ଼କୁ ଅବାକ ହୋଇ ଅନାଇ ରହେ । ଆଉ ଟିକିଏ ଆଗେଇ ଯାଇ ବାଳକଟି ଆଗ୍ନେୟଗିରିର ତଳି ଅଞ୍ଚଳରେ ଘୂରି ବୁଲେ ।

ଏମିତି ଭାବରେ ବରାବର ବୁଲୁଁ ବୁଲୁଁ ହଠାତ୍ ଦିନେ ବାଳକଟି ଆଗ୍ନେୟଗିରିର ଗର୍ଭରୁ କୌଣସି ପ୍ରକାରେ ନିଆଁ ଲଗାଇବାକୁ ଶିଖିଲା । ତେଣୁ ତାହାର ନାମ ହେଲା ଅଗ୍ନି କୁମାର ।

ବଣ ଜଙ୍ଗଲରେ ଘୂରି ବୁଲି ଅଗ୍ନି କୁମାର କେତେ କିସମର ଜୀବ ଜନ୍ତୁ ଶିକାର କରେ । ସେଗୁଡ଼ାକର କଞ୍ଚା ମାଂସ ଆଣି ସେ ଆଗ୍ନେୟଗିରିର ନିଆଁରେ ପୋଡ଼ି କରି ଖାଏ । ସେ ବରାବର ଲଙ୍ଗଳା ହୋଇ ବୁଲୁଥାଏ । ଶୀତ ଲାଗିଲେ ସେ ନିଆଁ ପାଖରେ ଯାଇ ବସେ ଏବଂ ନିଆଁର ତାତିରେ ଦେହକୁ ଗରମ ରଖେ । ପ୍ରଚଣ୍ଡ ଥଣ୍ଡାର କବଳରୁ ନିଜକୁ ବଞ୍ଚାଇବା ଲାଗି ସେ ଏପରି ଏକ ଉପାୟ ଉଦ୍‌ଭାବନ କଲା । କ୍ରମେ କ୍ରମେ ସେ ନିଆଁକୁ ନାନା ପ୍ରକାରରେ ବ୍ୟବହାର କଲା । ତେଣୁ ଅଗ୍ନିର ମହିମା ତାହା ପକ୍ଷରେ ବଢି ଯିବାରୁ, ସେ ଅଗ୍ନିକୁ ପରମ ଦେବତା ମନେ କରି ପୂଜା କରିବାକୁ ଲାଗିଲା ।

ବେଳେ ବେଳେ ଅଗ୍ନି କୁମାର ଘୋର ଜଙ୍ଗଲ ଭିତରେ ମନେ ମନେ ଆନନ୍ଦରେ ଗୀତ ଗାଇ ଗାଇ ଘୂରି ବୁଲେ । ଦିନେ ତାହାର ସୁମଧୁର ସଙ୍ଗୀତର ମନ ମତାଣିଆ ସ୍ୱରରେ ଆକୃଷ୍ଟ ହୋଇ ଜଣେ ବନ୍ୟ ନାରୀ ହଠାତ୍ ତାହା ଆଡ଼କୁ ହସି ହସି ଆଗେଇ ଆସିଲା । ପ୍ରଥମ ଦର୍ଶନରେ ହିଁ ସେହି ଯୁବତୀ ଏହି ସୁପୁରୁଷକୁ ଦେଖି ବିମୋହିତ ହେଲା ଏବଂ ନିଜକୁ ତାହାର ଚରଣ

ଛଳେ ଅକାତରରେ ସମର୍ପଣ କଲି । ଧୀରେ ଧୀରେ ପରିଚୟ ଗାଢ଼ ହୁଅନ୍ତେ, ସେମାନେ ଗୋଟିଏ ପତ୍ର କୁଡ଼ିଆ ତିଆରି କରି ଏକାଠି ବାସ କଲେ । ସେମାନଙ୍କର ଜୀବନ ସୁଖ ଶାନ୍ତିରେ ଅତିବାହିତ ହେଲା । କେତେ ମାସ ପରେ ସେହି ପ୍ରେୟସୀ ନାରୀ ଅଗ୍ନି କୁମାରକୁ ଗୋଟିଏ ସନ୍ତାନ ଉପହାର ଦେଲା ।

ଯୁବକ ଅଗ୍ନି କୁମାରର ଶୌର୍ଯ୍ୟ ବୀର୍ଯ୍ୟରେ ଆକୃଷ୍ଟ ହୋଇ କେତେ ଜଣ ବନ୍ୟ ପୁରୁଷ ଆସି ତାହାର ବଶ୍ୟତା ସ୍ୱୀକାର କଲେ । ସେମାନେ ତାହାର ପାଖରେ କୁଡ଼ିଆ ବନାଇ ରହିଲେ ଏବଂ ଅଗ୍ନି କୁମାରକୁ ନିଜର ଦଳପତି ବୋଲି ମାନି ଚଳିଲେ । ଅଗ୍ନି କୁମାର ନିଜର ଅନୁଚରମାନଙ୍କୁ ତୀର ଧନୁର ବ୍ୟବହାର ଶିଖାଇଲା । ବିପଦ ଆପଦ ସମୟରେ ଆଶ୍ରୟ ନେବା ପାଇଁ ସେ ସେମାନଙ୍କୁ ପାହାଡ଼ରେ କେତୋଟି ଗୁହା ଦେଖାଇଲା । କାଳ କ୍ରମେ ଅଗ୍ନି କୁମାରର ନେତୃତ୍ୱରେ ଗୋଟିଏ ଶ୍ରେଷ୍ଠ କାଠର ଶିକାରୀ ଦଳ ଗଠିତ ହେଲା ।

ଅଗ୍ନି କୁମାର ଯେଉଁଆଡ଼େ ଯାଉ ନା କାହିଁକି, ସେହି ପୂରା ଦଳଟି ତାହା ପଛେ ପଛେ ଯାଏ । ସେମାନେ ଏକାଠି ହୋଇ ଯିବାରୁ, ସେମାନଙ୍କ ମନରେ କିଛି ଡର ଭୟ ରହିଲା ନାହିଁ । ତାହା ଛଡ଼ା, ଗଲା ବେଳେ ସେମାନେ ବରାବର ଖଣ୍ଡିଏ ଜଳନ୍ତା କାଠ ସାଙ୍ଗରେ ଧରି ଥାଆନ୍ତି । ନିଭିଆ ବଣ ଭିତରେ ହିଂସ୍ର ଜନ୍ତୁସବୁ ନିଆଁ ଦେଖିଲା କ୍ଷଣି ଭୟରେ କୁଆଡ଼େ ପଳାଇ ଯାଆନ୍ତି ।

ନିଆଁ, ପଥର ଓ କାଠର ବ୍ୟବହାର ମଧ୍ୟ ବଣର ଅନ୍ୟ ଅଧିବାସୀମାନେ ଶିଖିଲେ । ଅଗ୍ନି କୁମାରର ଏତାଦୃଶ ଅଲୌକିକ କ୍ଷମତାରେ ମୁଗ୍ଧ ହୋଇ ସେମାନେ ତାହା ନିକଟରେ ଶରଣ

ପଶିଲେ । ନିଜକୁ ତାହାର ଦଳ ଭିତରେ ସାମିଲ କରି ପାରିବାରୁ, ସେମାନେ ମନେ ମନେ ଗର୍ବ ଅନୁଭବ କଲେ ।

ଏହିପରି ଭାବରେ ଅଗ୍ନି କୁମାରର ଦିନଗୁଡିକ ସୁଖରେ ଅତିବାହିତ ହେଉଥିଲା । କିନ୍ତୁ ସେହି ସୁଖ ତାହାର କପାଳରେ ବେଶୀ ଦିନ ସହିଲା ନାହିଁ । ଦିନେ ଦେବତା ବୋଧ ହୁଏ ତାଙ୍କର ଦାନର ପ୍ରତିଦାନ ଅଗ୍ନି କୁମାର ଠାରୁ ଗ୍ରହିଲେ ।

ସେହି ଦିନ ଦଳର ଲୋକମାନେ ଗୋଟାଏ ବଡ଼ ଆକାରରେ ନିଆଁ ଜାଳିଲେ । ତା ପରେ ସମସ୍ତଙ୍କ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପରେ ସେମାନେ ନିଜର ଦଳପତି ଅଗ୍ନି କୁମାରକୁ ଦେବତାଙ୍କ ନିକଟରେ ଆହୁତି ଦେଲେ ।

ଅଗ୍ନିକୁମାରର ମୃତ୍ୟୁ ହେଲା ସତ, କିନ୍ତୁ ତାହାର ଉଦ୍ଭାବନୀ କ୍ଷମତାର ପ୍ରତିକୃତି ଅମର ହୋଇ ପଡ଼ିରେ ରହିଗଲା ।

୨

ତା ପରେ କେତେକ ଯୁଗ ବିତିଲା । 'ଗୁଣାଙ୍ଗ ଏପି' ଆଗ୍ନେୟଗିରିରୁ ନିଆଁ ଏକାବେଳେ ଲିଭିଗଲା । ଉତ୍ତର ଦିଗରୁ ପ୍ରବଳ ତୁଷାର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା । କ୍ରମେ କ୍ରମେ ସେହି ସ୍ରୋତ ବଣ ଜଙ୍ଗଲ ଓ ଉପତ୍ୟକାରେ ଖେଳିଗଲା ।

ସେତେବେଳେ ସେହି ଘନ ଜଙ୍ଗଲରେ ଗୋଟିଏ ଛୋଟ ଶିକାରୀ ଦଳ କୌଣସି ମତେ ଅତି ହୀନ ଅବସ୍ଥାରେ ବାସ କରୁଥିଲା । ପ୍ରଚଣ୍ଡ ଥଣ୍ଡା ଓ ଶୀତରେ ଅସ୍ତବ୍ୟସ୍ତ ହୋଇ ଏହି ଶିକାରୀ ଦଳଟି ବଣର ଜୀବ ଜନ୍ତୁଙ୍କ ସାଙ୍ଗରେ ଦକ୍ଷିଣ ମୂଲକକୁ ପଳାଇଲା ।

ଏହି ଦଳ ଭିତରେ କାର୍ଲ ନାମକ ଜଣେ ଲୋକ ଥିଲା । କାର୍ଲ ନିଆଁକୁ ଏତେ ବେଶୀ ଭୟ କରୁ ନ ଥିଲା । କାରଣ ସେ ନିଆଁର ବ୍ୟବହାର କେତେକ ପରିମାଣରେ ଜାଣିଥିଲା ।

ଦିନେ ସହସା କାର୍ଲ କୌଣସି କାରଣରୁ ଦଳଚ୍ୟୁତ ହେଲା । ସଙ୍ଗେ ସଙ୍ଗେ ସେ ନିଆଁକୁ ମଧ ହରାଇଲା । କାର୍ଲ ଘୂରି ଘୂରି ଦକ୍ଷିଣ ଅଞ୍ଚଳରୁ ଯାଇ ପୁଣି ଉତ୍ତର ଅଞ୍ଚଳରେ ପହଞ୍ଚି ଗୋଟିଏ ସ୍ଥାନରେ ଆଶ୍ରୟ ନେଲା । ପଶୁର ଚମଡ଼ାକୁ ଦେହର ଆଚ୍ଛାଦନ ହିସାବରେ ବ୍ୟବହାର କରିବାକୁ ସେ ଶିଖିଲା । ତାହା ଦ୍ୱାରା ସେ ପ୍ରଚଣ୍ଡ ଶୀତର କବଳରୁ ନିଜର ଦେହକୁ ରକ୍ଷା କଲା ଏବଂ ଉତ୍ତପ୍ତ ମଧ କଲା । ବେଳେ ବେଳେ ସେ ମାଟିରେ ଗାତ ଖୋଳି ତାହାର ଭିତରେ ରହୁଥିଲା । ତା ପରେ ପଥରସବୁ ଗଡ଼ାଇ ଆଣି ଖଣ୍ଡିକ ପରେ ଖଣ୍ଡିଏ ସଜାଇ ଗୋଟାଏ ଘର ତିଆରି କରି ସେ ତାହାର ଭିତରେ କୌଣସି ମତେ ମଥା ଗୁଞ୍ଜି ରହିଲା ।

ଯେତେ ଦୂରକୁ ତାହାର ଦୃଷ୍ଟି ଗଲା କାର୍ଲ ଦେଖିଲା ଚାରିଆଡ଼େ ଖାଲି ବରଫର ଧଳା ଗାଲିଚା ବିଛା ହୋଇଛି । ସେଇଥି ପାଇଁ ଏତେ ଥଣ୍ଡା ପଡ଼ୁଛି ବୋଲି ସେ ମନେ ମନେ ମାଲୁମ କଲା । ତହୁଁ ସେ ଶୀତ ବା ଶୀତ ନାମକ ଶତ୍ରୁକୁ ଖୋଜି ବୁଲିଲା । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ ।

କେତେ ଦିନ ପରେ ସେ ବଣ ଭିତରେ ହଠାତ୍ ଗୋଟିଏ କୁକୁରକୁ ଦେଖି ପାରିଲା । ଜନ୍ତୁଟିକୁ ଦେଖି ଅତି ଖୁସି ହୋଇ ସେ ତାହା ସଙ୍ଗରେ ବନ୍ଧୁତା ସ୍ଥାପନ କଲା ।

ଶୀତ ପରେ କାର୍ଲ ଗୋଟିଏ ମଜଭୁତ ଘର ତିଆରି କଲା । ସେ ବଣରେ ଏଣେ ତେଣେ ବୁଲି ଯେଉଁ ଜୀବଜନ୍ତୁ ସବୁ ଶିକାର କଲା, ସେହି ମାଂସ ଖାଇ ସେ ଦିନ ବିତାଇବାକୁ ଲାଗିଲା । କେତେ

ବେଳେ କୌଣସି ବଣୁଆ ଲୋକ ତାହାର ହାବୁଡ଼ରେ ପଡ଼ିଲେ, ସେ ତାହାର ମାଂସ ଖାଇ ବି ତୃପ୍ତ ହୁଏ ।

ଦିନେ ବଣରେ ବୁଲୁ ବୁଲୁ ସହସା ଗୋଟିଏ ଲୋକକୁ ଦେଖି ପାରି କାର୍ଲ ତାହାକୁ ଗୋଡ଼ାଇଲା । କିନ୍ତୁ ଯେତେ ବେଳେ ଶିକାର ତାହାର ହାତକୁ ଆସିଲା, ସେ ଲକ୍ଷ୍ୟ କଲା ଯେ ତାହାର ଆକୃତି ଭିନ୍ନ ଧରଣର । ତାହାର ଦେହ ଓ ରୂପ ଦେଖି କାର୍ଲ ତାହା ପ୍ରତି ଆକୃଷ୍ଟ ହେଲା । ଅସଲ କଥା ହେଉଛି, ସେ ଜଣେ ସ୍ତ୍ରୀ ଲୋକ । ଶିକାରଟାକୁ ଅବଶ୍ୟ ସେ ତାହାର ଖାଦ୍ୟ ଭାବରେ ବ୍ୟବହାର କଲା ନାହିଁ । ମାତ୍ର ସେ ତାହାକୁ ଜୀବନ ସଙ୍ଗିନୀ ଭାବରେ ଗ୍ରହଣ କଲା । ତାହାର ନାମ ଦିଆଗଲା 'ମାମ' । ଶ୍ରୀମତୀ ମାମ କାର୍ଲର ଗୃହିଣୀ ହେଲା ।

ଶ୍ରୀମତୀ ମାମ ନିଜର ସ୍ୱାମୀ କାର୍ଲକୁ ଏକ ସନ୍ତାନ ଉପହାର ଦେଲା । ଏତିକରେ ତାହାର କାମ ସରିଲା ନାହିଁ । ତାହାର ନାନା ରକମ ଗୁଣରେ କାର୍ଲ ମୋହିତ ହେଲା । କାର୍ଲର ସଂସାର କ୍ରମେ କ୍ରମେ ଦୃଢ଼ ହେଲା । ସେ ହେଲା ତାହାର ଏକ ସଚ୍ଚୋଟ ବନ୍ଧୁ । କ୍ରମେ କ୍ରମେ କାର୍ଲ ଗୋଟିଏ ଶ୍ରେଷ୍ଠ ସଂସାର ଗଢ଼ିଲା । ତାହାର ଯାଯାବର ପ୍ରକୃତି ଆଉ ରହିଲା ନାହିଁ । ଦୁହେଁ ବରାବର ନିଜ ନିଜ କାମରେ ଲାଗିଲେ ଏବଂ ଖେତରେ ସବୁଜ ଫସଲ ଫଳାଇଲେ । ଶ୍ରୀମତୀ ମାମ ପରିବାରର ସମସ୍ତଙ୍କ ପାଇଁ ରୋଷେଇ କଲା ଏବଂ ନାନା ରକମ ଖାଦ୍ୟ ପରିବେଷଣ କଲା । ଖାଲି ମାଂସ ସେମାନଙ୍କର ଏକମାତ୍ର ଖାଦ୍ୟ ହୋଇ ରହିଲା ନାହିଁ । ସେମାନେ ଆସ୍ତେ ଆସ୍ତେ ଶାଗ, ପନି ପରିବା ଓ ଫଳ ମୂଳ ମଧ୍ୟ ଖାଇବାକୁ ଶିଖିଲେ ।

କାର୍ଲ ନିଆଁକୁ ହରାଇ ଥିଲେ ସୁଦ୍ଧା ତାହାର ସାବକ ବ୍ୟବହାର ଭୁଲି ନ ଥିଲା । ଦିନେ ଏକାଗ୍ର ଚିତ୍ତରେ ଅନବରତ ଚେଷ୍ଟା ଓ

ପରିଶ୍ରମ କରି କରି ସେ ଦୁଇଟି ପଥରକୁ ଘଷି ଘଷି ଶେଷକୁ ନିଆଁ ବାହାର କଲା । କାର୍ଲ ତାହାର ସ୍ତ୍ରୀ ଓ ଶିଶୁମାନଙ୍କୁ ନିଆଁର ବ୍ୟବହାର ଶିଖାଇଲା । ନିଆଁର ସାହାଯ୍ୟରେ ନାରୀମାନେ ରାନ୍ଧିବାକୁ ଶିଖିଲେ ଏବଂ ମାଟିର ବାସନ କୁସନ ମଧ୍ୟ ତିଆରି କଲେ ।

କାଳ କ୍ରମେ କାର୍ଲର ବଂଶଧରମାନଙ୍କ ଭିତରୁ ଗୋଟିଏ ସୁବୋହିତ ସମ୍ପ୍ରଦାୟ ସୃଷ୍ଟି ହେଲା । ସେଥି ଭିତରେ ଶ୍ୱେତ ଭଲ୍ଲୁକ ଉଦ୍ଧତ ପ୍ରକୃତିର ଥିଲା ।

ଦିନେ ଜଣେ ସ୍ୱଜାତିର ଲୋକକୁ ହତ୍ୟାକରିବାର ଅପରାଧରେ ଶ୍ୱେତ ଭଲ୍ଲୁକ ସମାଜଚ୍ୟୁତ ହେଲା । ତହୁଁ ସେ ଦିନେ ତାହାର ସଙ୍ଗିନୀ ମାମକୁ ନେଇ କୁଆଡ଼େ ପଳାଇଲା ।

ଶ୍ୱେତ ଭଲ୍ଲୁକ ଶ୍ରୀମତୀ ମାମକୁ ଧରି ବୁଲି ବୁଲି ଯାଇ ସମୁଦ୍ର କୂଳରେ ପହଞ୍ଚିଲା ଏବଂ ସେଠାରେ ଘର ବାନ୍ଧିଲା । ଜଙ୍ଗଲରୁ କାଠ କାଟି ସେ ଛୋଟ ଛୋଟ ନୌକା ତିଆରି କଲା । ନିଜର ପିଲାମାନଙ୍କୁ ସେହି ନୌକାରେ ବସାଇ ଶ୍ୱେତ ଭଲ୍ଲୁକ ଅଜଣା ଦେଶକୁ ନେଇ ଗଲା ଏବଂ ସେଠାରୁ ନାନା ରକମ ଦ୍ରବ୍ୟ ସଂଗ୍ରହ କରି ଫେରି ଆସିଲା । ଏଣେ ଶ୍ରୀମତୀ ମାମ ଝିଅମାନଙ୍କୁ ସାଙ୍ଗରେ ଧରି ବିଲ ବାଡ଼ିରେ କାମ କଲା, ଫସଲ ଫଳାଇଲା ଏବଂ ଗୃହ ପାଳିତ ପଶୁଙ୍କୁ ମଧ୍ୟ ଦେଖାଶୁଣା କରିବାକୁ ଲାଗିଲା ।

ଶ୍ୱେତ ଭଲ୍ଲୁକ ଘୋଡ଼ାକୁ କାମରେ ଲଗାଇଲା । ସେ ଗାଡ଼ି ତିଆରି କଲା । ଘୋଡ଼ା ସେହି ଗାଡ଼ି ଟାଣିଲା ।

ତାହାର ପୁଅମାନେ ଶ୍ୱେତ ଭଲ୍ଲୁକ ଠାରୁ ଅଧିକ ଦୁଃସାହସୀ ହେଲେ । ସେମାନେ ଘୋଡ଼ାରେ ଚଢ଼ି ମହା ଆନନ୍ଦରେ ଚାରି ଆଡ଼େ ଧାଇଁ ବୁଲିଲେ । ପିଲାମାନଙ୍କ ଭିତରେ ଗଧିଆ ନାମରେ ଗୋଟିଏ ପୁଅ ଥିଲା । ସେ ସବୁଠାରୁ ବେଶୀ ଦୁଷ୍ଟ ଥିଲା । ଘୋଡ଼ା ତାହାର

ପରମ ପ୍ରିୟ ବାହନ ହେଲା । ହେଲେ ସେ ତାହାର ପ୍ରିୟ ଘୋଡ଼ାରେ ଚଢ଼ି କୁଆଡ଼େ ପଳାଇଲା ଏବଂ ଯାଯାବର ଜୀବନ ଯାପନ କଲା ।

ଓ

ଆଉ ଏକ ଯୁଗ ବିତିଲା ।

ହେଲେ ହଠାତ୍ ଆସି ପହଞ୍ଚିଲା ନରମା ଜେଷ୍ଟି ନାମରେ ଜଣେ ବଳିଷ୍ଠ ଯୁବା ପୁରୁଷ । କୌଣସି ଏକ ମାତୃ ଶାସିତ ପରିବାର ଠାରୁ ବିଚ୍ଛିନ୍ନ ହୋଇ ସେ ଏଣେ ପଳାଇ ଆସିଲା । ସମୁଦ୍ର କୂଳ ନିକଟରେ କୌଣସି ଗୋଟିଏ ଦ୍ୱୀପର ମଝିରେ ତରୁଣ ଜେଷ୍ଟି ନିଜର ଘର ବାନ୍ଧିଲା ।

ହେଲେ ଜେଷ୍ଟି ଗୋଟିଏ ବଡ଼ ଗଛର ଗଣ୍ଡି ଖୋଳି ଗୋଟିଏ ସ୍ରୋତ ଡଙ୍ଗୀ ତିଆରି କଲା । ଜଣେ ତରୁଣୀକୁ ସେ ନିଜର ସଙ୍ଗିନୀ ହିସାବରେ ବାଛିଲା । ତା'ପରେ ତାହାକୁ ନେଇ ସେହି ଡ଼ଙ୍ଗୀରେ ବସାଇ ଜେଷ୍ଟି ହେଲେ ଅଜଣା ଦେଶର ସନ୍ଧାନରେ ବାହାରିଗଲା ।

ଅନନ୍ତ ନୀଳ ସମୁଦ୍ରରେ ଭସି ଭସି ଯାଇ ଜେଷ୍ଟି ଗୋଟିଏ ନୂଆ ଦେଶ ଆବିଷ୍କାର କଲା । ଆଜି ସେହି ଦେଶର ନାମ ହୋଇଛି ସୁଇଡ଼େନ । ସେଠାରେ ଜେଷ୍ଟିର କେତୋଟି ପୁଅ ଝିଅ ଜନ୍ମ ହେଲେ । ସପରିବାରରେ ସେଠାରେ କିଛି ଦିନ ସୁଖରେ କଟାଇ ଜେଷ୍ଟି ନିଜର ପୁରୁଣା ଆସ୍ଥାନ ସେହି ଦ୍ୱୀପକୁ ବାହୁଡ଼ିଲେ ।

ଦ୍ୱୀପକୁ ଫେରି ଆସିଲା ପରେ ଜେଷ୍ଟିକୁ କେତେ ଜଣ ସାଙ୍ଗ ମିଳିଲେ । ସେ ସେମାନଙ୍କୁ ଧରି ହେଲେ ଜଳ ପଥରେ ପୁଣି ବାହାରି ପଡ଼ିଲା । ଏଥର ଜେଷ୍ଟି ତାହାର ନୌକାରେ ପାଲ ବାନ୍ଧିଲା ଏବଂ ଆହୁଲା ବ୍ୟବହାର କଲା । ସଙ୍ଗୀମାନଙ୍କୁ ଧରି ସେ ଖୁବ୍ ଖୁସିରେ ଜଳ ପଥରେ ବହୁ ଅଜଣା ଦେଶରେ ଘୂରି ବୁଲିଲା ।

ଏମିତି ଭାବରେ କେତେ ବର୍ଷ ବିତିଲା । ଜେଷ୍ଟର ସଙ୍ଗୀମାନଙ୍କ ଭିତରୁ ଜଣ ଜଣ କରି ସମସ୍ତେ ମରିଗଲେ । କିନ୍ତୁ ଜେଷ୍ଟ ସେତେବେଳେ ବି ଯଥେଷ୍ଟ ଶକ୍ତିଶାଳୀ ଓ କର୍ମଠ ଥିଲା । ସେ ଇଚ୍ଛା ମରଣର ବର ପାଇଥିଲା । ତା ସାଂଗରେ ଥିଲା ଗୋଟିଏ ଜଳନ୍ତା ମହମ ବତି, ଅଖଣ୍ଡ ଜ୍ୟୋତି, ତାହାର ଜୀବନର ପ୍ରତୀକ ।

ଦିନେ ସକାଳେ ଜେଷ୍ଟର ନିଦ ଭାଙ୍ଗିଲାରୁ ସେ ଦେଖିଲା, ସେ ଏକ ଅଜବ ଦେଶରେ ଆସି ପହଞ୍ଚିଛି । ସେଠାକାର ଲୋକମାନେ ଅଦ୍ଭୁତ ଧରଣର ଥିଲେ— କିଏ କେତେକ କ୍ରୀତ ଦାସ, ଆଉ କେତେକ ସମ୍ଭ୍ରାନ୍ତ ଶ୍ରେଣୀ । ଜେଷ୍ଟ ସେମାନଙ୍କର କଥାବାର୍ତ୍ତା ଓ ଚାଲିଚଳଣି ବୁଝି ପାରିଲା ନାହିଁ ।

ଆଉ ଗୋଟାଏ ମଜା କଥା ହେଲା । ଦିନେ ଜେଷ୍ଟ ଜଣେ କୁତ୍ସିତ ଚେହେରାର କ୍ରୀତ ଦାସୀକୁ ନିଜର ସ୍ତ୍ରୀ ରୂପେ ପାଇଲା । ସେ କିପରି ଏହା ସମ୍ଭବ ହେଲା । ବହୁତ ଭାବି ଚିନ୍ତି କିଛି ସ୍ଥିର କରି ପାରିଲା ନାହିଁ, ତାହା କା କିପରି ସମ୍ଭବ ହେଲା । ତହୁଁ ତାହାର ମନ ଦୁଃଖରେ ଭାଙ୍ଗିଗଲା ।

ଏହି ଅଜବ ଦେଶରେ ଜେଷ୍ଟ ନିଜକୁ ହରାଇଲା । ସେ ବିଭ୍ରାନ୍ତ ହେଲା । ଦିନେ ସେ ନିଜର କ୍ରୀତଦାସୀ ସ୍ତ୍ରୀକୁ ସାଙ୍ଗରେ ଧରି ନୌକାରେ ବସିଲା, ପାଲ ଛାଡ଼ିଲା ଏବଂ ଆହୁରି ମାଇଲ ପୂର୍ବର ଆବିଷ୍କୃତ ଦେଶ ସୁଇଡେନ ଅଭିମୁଖରେ ସାଗର ବକ୍ଷରେ ନୌକାକୁ ଭସାଇ ଦେଲା ।

ଜେଷ୍ଟ ସେଠାରେ ପହଞ୍ଚି ଅବାକ ହେଲା । ସେ ଦେଖିଲା, ଇତି ମଧ୍ୟରେ ଆହୁରି ଅନେକ ଲୋକ ଯାଇ ସେଠାରେ ହାଜର ହେଲେଣି ।

ଭାରି ଆଡ଼େ ଖାଲି ବନ୍ଦୁଙ୍ଗଲା । ନିଜର ଶକ୍ତି ଓ ବୁଦ୍ଧିର ବଳରେ କିଛି ଦିନ ଭିତରେ ଜେଷ୍ଟ ସେଠାକାର ଅଧିକାରୀର ଆସନ

ପାଇଲା । ସେଠାରେ ସେ ଲୋକମାନଙ୍କୁ କଠିନ ଧାତୁ ପଥରସବୁ ତରଳାଇବାର ପଦ୍ଧତି ଶିଖାଇଲା । କ୍ରମେ କ୍ରମେ ସେମାନେ ଧାତୁ ବ୍ୟବହାର କରିବାର କୌଶଳ ଶିଖିଲେ । ସୁତରାଂ ଆସିଲା ଲୌହ ଯୁଗ ।

ଜେଷ୍ଟର ନେତୃତ୍ୱରେ ସେହି ଲୋକମାନେ ସେଠାରେ ନୂଆ ଘର ବାନ୍ଧିଲେ । ସେମାନେ ପ୍ରଥମ ଘରେ ପାଳିଲେ ଗୃହ ପାଳିତ ପଶୁସବୁ, ଗୋରୁ, ମେଣ୍ଢା ଛେଳି ଓ ଘୋଡ଼ା । ସେମାନଙ୍କୁ ମଧ୍ୟ ସେମାନେ ନିଜର ନାନା କାମରେ ଲଗାଇଲେ ।

ସେହି ସ୍ଥାନରେ ସବା ପ୍ରଥମେ ସ୍ଥାନୀୟ ଅଧିବାସୀମାନଙ୍କ ଭିତରେ ବିବାହ ପ୍ରଥା ପ୍ରଚଳିତ ହେଲା । ଦଳ ଦଳ ହୋଇ ସନ୍ତାନ-ମାନେ ଜନ୍ମ ହେଲେ । କ୍ରମେ କ୍ରମେ ଗୋଟିଏ ଉପନିବେଶ ପ୍ରତିଷ୍ଠିତ ହେଲା । ତାହା ଦେଖି ଜେଷ୍ଟ ଖୁବ୍ ଖୁସି ହୋଇ ଏକ ତୃପ୍ତିକର ନିଃଶ୍ୱାସ ଛାଡ଼ିଲା ।

ହଠାତ୍ ଜେଷ୍ଟର ସ୍ତ୍ରୀ ଅସ୍ୱାଭାବିକ ମରିଗଲା । ଫଳରେ, ଜେଷ୍ଟ ଭାଙ୍ଗି ପଡ଼ିଲା । ସେ ମନେ ମନେ ଗୋଟାଏ ବିରାଟ ଶୂନ୍ୟତା ଅନୁଭବ କଲା । ସେହି ଉପନିବେଶ ପ୍ରତି ତାହାର ଆଉ କିଛି ଆକର୍ଷଣ ରହିଲା ନାହିଁ । ତାହାର ମନ ଅସ୍ଥିର ହେଲା ।

ହଠାତ୍ ଜେଷ୍ଟ କାହାକୁ କିଛି ନ କହି ଘରୁ ପଳାଇଗଲା । ପଛରେ ପଡ଼ି ରହିଲା ନିଜର ସୃଷ୍ଟି— ବର୍ତ୍ତମାନର ସୁଇଡେନ । ଡଙ୍ଗାରେ ଚଢ଼ି ସେ ଦଉଡ଼ିଟା ଫିଟାଇ ଦେଇ ଜୋରରେ ଆହୁଲା ମାରିଲା ।

ମଧ୍ୟ ୟୁରୋପକୁ ପଛରେ ପକାଇ ଦେଇ ଡଙ୍ଗା ଧୀରେ ଧୀରେ ଆଗେଇ ଚାଲିଲା । ଦାନୟୁବ ନଦୀର ବକ୍ଷ ଚିରି ଡଙ୍ଗା ଆହୁରି

ଆଗକୁ ଧାଇଁଲା । ଭୂମଧ୍ୟ ସାଗରୀୟ ଉପତ୍ୟକାର ପାଖ ଦେଇ ଜେଷ୍ଟ୍ ଆଫ୍ରିକାର ଦକ୍ଷିଣ ଦିଗ ଅଭିମୁଖରେ ଅଗ୍ରସର ହେଲା ।

ଯାଉଁ ଯାଉଁ ଜେଷ୍ଟର ମନେ ପଡ଼ିଲା, ଏଠାରେ ପ୍ରସ୍ତର ଯୁଗର ପ୍ରାରମ୍ଭରେ ତାହାର ଜୀବନ ଆରମ୍ଭ ହୋଇଥିଲା । ଦକ୍ଷିଣର ଏହି ଅଞ୍ଚଳରେ ସେମିତି କିଛି ଅଭାବ ଅନୁଭବ କଲା । ତଥାପି ମାତୃଭୂମି ପ୍ରତି ଜେଷ୍ଟର ମନ ହଠାତ୍ ଚଞ୍ଚଳ ହେଲା । ସେ ଭାବ ବିହ୍ୱଳ ହୋଇ ପଡ଼ିଲା । ସେ ଆଉ ଆଗକୁ ଯାଇ ପାରିଲା ନାହିଁ ।

ଶୂନ୍ୟ ମାର୍ଗରେ ଘୂରି ଘୂରି ଜେଷ୍ଟ ଯାଇ ଇଂଲଣ୍ଡରେ ଉପସ୍ଥିତ ହେଲା । ସେଠାକାର ଦଳପତି ଟୋଲ ତାହାକୁ ସାଦର ଅଭ୍ୟର୍ଥନା ଜଣାଇଲା ।

ଦଳପତି ଟୋଲ ଜେଷ୍ଟର ତୀକ୍ଷ୍ଣ ବୁଦ୍ଧିର ପରିଚୟ ପାଇଲା । ଜେଷ୍ଟର ଲୌହ ବ୍ୟବହାରର ଆଶ୍ଚର୍ଯ୍ୟ କ୍ଷମତାର କଥା ସେ ଜାଣି ପାରିଲା । ଫଳରେ, ଦଳପତି ନିକଟରେ ଜେଷ୍ଟର ମର୍ଯ୍ୟାଦା ବଢ଼ିଗଲା ।

ଦଳପତି ଟୋଲର ମାରଫତରେ ଥିଲା ଇଂଲଣ୍ଡ ଅଧିବାସୀଙ୍କର ଗୋଟିଏ କାଠର ପ୍ରତିମା—ସେମାନଙ୍କର ଏକମାତ୍ର ଦେବତାର ପ୍ରତିମୂର୍ତ୍ତି । ଦଳପତିର ଅନୁରୋଧରେ ଜେଷ୍ଟ ସେହି କାଠର ପ୍ରତିମାକୁ ପିତଳ ମୂର୍ତ୍ତିରେ ପରିଣତ କଲା ।

ବସନ୍ତର ଆଗମନରେ ନୂତନ ଦେବ ପ୍ରତିମାକୁ ଖୁବ୍ ଜାକଜମକରେ ପ୍ରତିଷ୍ଠା କରା ହେଲା । ଆରାଧ୍ୟ ଦେବତାର ପୂଜାର ଉପଚାର ରୂପେ କେତେ ଜଣ କ୍ରୀତଦାସଙ୍କୁ ବଳି ଦିଆଗଲା । ଉତ୍ସବ ସରିଲାରୁ ଜେଷ୍ଟ ପୁଣି ବାହାରି ପଡ଼ିଲା । ଏଥର ସେ ପଦ ଯାତ୍ରା କଲା ।

୪

ବର୍ଷ ଗଡ଼ି ଗଲା । ସମୁଦ୍ରର ଉତ୍ତାଳ ତରଙ୍ଗ ଜଟଲଣ୍ଡକୁ ଗ୍ରାସ କରିବାକୁ ଆଗେଇ ଆସିଲା । ସ୍ଥାନୀୟ ଉପଜାତିମାନେ ନିଜ ନିଜର ପ୍ରାଣ ରକ୍ଷା କରିବା ପାଇଁ ସେହି ଦେଶ ଛାଡ଼ି ପଳାଇଲେ । ଯିବା ବେଳେ ସେମାନେ ଆରାଧ୍ୟ ଦେବ ପ୍ରତିମାକୁ ସାଙ୍ଗରେ ନେବାକୁ ଭୁଲିଲେ ନାହିଁ । ଏକମାତ୍ର ବୃଦ୍ଧ ଦଳପତି ଟୋଲ ପଛରେ ପଡ଼ି ରହିଲା ।

ଏହି ଉତ୍ପାଟିତ ଉପଜାତିର ଦଳଟା ଯାଯାବର ପରି ମଧ୍ୟ ଓ ଦକ୍ଷିଣ ୟୁରୋପର ବିଭିନ୍ନ ଅଞ୍ଚଳରେ ଘୂରି ବୁଲିଲା । ଏଣିକି ଦଳଟି ଭିସିଗୋଥିକ୍ ଉପଜାତି ନାମରେ ପରିଚିତ ହେଲା । ସେମାନେ ଘୂରି ବୁଲିବା ବେଳେ ବିଭିନ୍ନ ଜାଗାରୁ ଆଉ କେତେକ ଉପଜାତି ଆସି ସେମାନଙ୍କ ସହିତ ମିଶିଲେ ।

ନିଜର ବାସସ୍ଥାନ ସକାଶେ ମନୋମତ ଜାଗା ଖୋଜି ଖୋଜି ଏହି ଦଳଟି ଏକ ସମୟରେ ରୋମ ନଗରୀର ସୀମାନ୍ତରେ ଆସି ଉପସ୍ଥିତ ହେଲା । ଯାଯାବରମାନଙ୍କର ଲୋଲୁପ ଦୃଷ୍ଟି ସେହି ଦେଶ ଉପରେ ପଡ଼ିଲା ।

ରୋମାନମାନେ ସେହି ଉପଜାତିର ଲୋକମାନଙ୍କୁ ଦେଖି ସେମାନଙ୍କୁ ନାନା ରକମ ଧମକ ଚମକ ଦେଲେ ଏବଂ ସେମାନଙ୍କୁ ଫେରିଯିବା ପାଇଁ କଡ଼ା ହୁକୁମ ଝାଡ଼ିଲେ । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ ।

ନିଜ ଜାତି ଉପରେ ଆସନ୍ନ ବିପଦର ଖବର ପାଇ ଆଉ କେତେକ ଉପଜାତି ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଉତ୍ତର ଦିଗରୁ ଧାଇଁ ଆସିଲେ । ସେମାନେ ମିଳିତ ଭାବରେ ଅତର୍କିତ ରୋମାନମାନଙ୍କ ଉପରେ ଚଢ଼ାଉ କଲେ ।

ରୋମାନମାନେ ଶତ୍ରୁର ଏପରି ଆକ୍ରମଣ ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ତେଣୁ ସେମାନେ ଏହି ଆକସ୍ମିକ ଆକ୍ରମଣରେ ବିଚଳିତ ହେଲେ ।ସେମାନେ ଏହି ଉଚ୍ଛନ୍ନ ଯାଯାବରମାନଙ୍କର ଗତି ରୋଧ କରି ପାରିଲେ ନାହିଁ ।

ଗର୍ବ ଓ ଆନନ୍ଦର ଉଚ୍ଛ୍ୱାସରେ କାମବ୍ରୀୟାନମାନେ ରୋମାନ ସେନାପତିଙ୍କର ରଣ କୌଶଳର କଥା ଭାବିବାକୁ ଆଦୌ ଅବସର ପାଇଲେ ନାହିଁ । ସେମାନେ ଉଚ୍ଛୃଙ୍ଖଳ ଭାବରେ ଏଣେ ତେଣେ ଖେଳେଇ ହୋଇଗଲେ ଏବଂ ହୋ ଚୋ ହଟ୍ଟଗୋଳରେ ମାତିଲେ ।

ଏହି ସୁଯୋଗରେ ରୋମାନ ସେନାପତିଙ୍କ ନିର୍ଦ୍ଦେଶରେ ସୈନ୍ୟମାନେ ଉପଜାତିର ଲୋକମାନଙ୍କ ଉପରେ ସହସା ପାଲଟା ଆକ୍ରମଣ ଆରମ୍ଭ କଲେ । ସେମାନେ ସମ୍ପୂର୍ଣ୍ଣ ଭାବରେ ବିଧ୍ୱସ୍ତ ହେଲେ । ବହୁ ଲୋକ ନିହତ ହେଲେ । ବନ୍ଦୀମାନଙ୍କ ଭିତରୁ କେତେକ ମଧ୍ୟ ଆତ୍ମହତ୍ୟା କଲେ । ରୋମାନମାନେ ଅବଶିଷ୍ଟ ବନ୍ଦୀ-ମାନଙ୍କୁ କ୍ରୀତଦାସ ଭାବରେ ନିଜର ଲୋକମାନଙ୍କୁ ବିକି ଦେଲେ । କାଳ କ୍ରମେ କ୍ରୀତଦାସମାନଙ୍କର ରକ୍ତ ବିଜୟୀ ରୋମାନମାନଙ୍କ ରକ୍ତ ସହିତ ମିଶିଗଲା ।

ସେହି ଆକ୍ରମଣକାରୀ ଉପଜାତିଙ୍କ ଭିତରେ ନସୁନା କେଷ୍ଟ ଅନ୍ୟତମ ଥିଲା । ପରିସ୍ଥିତି ଉପୁଙ୍କର ଅବସ୍ଥା ଧରିବାର ଦେଖି, ସେ କେଉଁ ଫାଙ୍କରେ ସେଠାରୁ ଖସି ପଳାଇଲା ।

ଜୀବନ ଉପରେ କେଷ୍ଟର ବିତୃଷ୍ଣା ଆସିଲା । ସେ ଉପଲବ୍ଧି କଲା, ସେ ଏହି ଦୁନିଆରେ ଖୁବ୍ ବେଶୀ ଦିନ ରହିଲାଣି । ତେଣୁ ସେ ସ୍ଥିର କଲା, ନିଭୃତରେ ସମୁଦ୍ରର ବକ୍ଷରେ ବସି ତାହାର ଜୀବନର ଯାପଟି ଥରେ ଜଳାଇ ଖତମ କରିଦେବ । ସେହି ଜଳନ୍ତା ମହମବତିଟା ହାତରେ ଧରି କେଷ୍ଟ ଡିଙ୍ଗୀରେ ଉଠିଲା । ଡିଙ୍ଗୀଟି

ଧୀରେ ଧୀରେ ସେହି ଅନନ୍ତ ବିଶାଳ ନୀଳ ସମୁଦ୍ରର ମଝିକୁ ଆଗେଇ ଗଲି ।

ଏଣେ ରୋମ ସାମ୍ରାଜ୍ୟର ପତନ ପରେ ଅସଭ୍ୟ ବର୍ବର ଉପଜାତିମାନେ ଧୀରେ ଧୀରେ ଉତ୍ତର ଦିଗରୁ ସେଠାକୁ ଚାଲି ଆସିଲେ ଏବଂ ଚାରି ଆଡ଼େ ଖେଳି ଗଲେ । କ୍ରମେ କ୍ରମେ ସେମାନେ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ହେଲେ ।

ସେଠାରୁ ଆସିଲା ବେଳେ ସେମାନେ ଗୋଟିଏ ପ୍ରାଚୀନ ଜାହାଜ ସାଙ୍ଗରେ ଆଣିଥିଲେ । ସେମାନେ ସେହି ଜାହାଜଟିକୁ ମାଟି ଉପରେ ଓଲଟାଇ ବସାଇ ଦେଲେ । ତାହା ଗୋଟିଏ ଗଥିକ ଧର୍ମ ମନ୍ଦିର ପରି ଦିଶିଲା । ସୃଷ୍ଟି ହେଲା ଗୀର୍ଜା ।

ଉତ୍ତର ଦିଗରୁ ଆଗତ ସେହି ଅସଭ୍ୟ ଉପଜାତିଙ୍କ ଭିତରୁ କ୍ରମେ କ୍ରମେ ଗୋଟିଏ ନୂତନ ସମ୍ପ୍ରଦାୟ ସୃଷ୍ଟି ହେଲା । ସେହି ହେଉଛି ପ୍ରଥମ ସଭ୍ୟ ଜାତି । ତାହାର ନାମକରଣ ହେଲା ଲଙ୍ଗୋବାର୍ଡ଼ସ ।

କ୍ରିଷ୍ଟୋଫର କଲମ୍ବସ ହେଉଛନ୍ତି ସେହି ଲଙ୍ଗୋବାର୍ଡସ ସମ୍ପ୍ରଦାୟର ଜଣେ ବିଶିଷ୍ଟ ଉତ୍ତରାଧିକାରୀ । ଉତ୍ତର କାଳରେ ସେ ହୋଇଥିଲେ ଆଧୁନିକ ସଭ୍ୟତାର ଅଗ୍ରଗତିର ପ୍ରଥମ ଦୂତ । ତାଙ୍କରି ପ୍ରଚେଷ୍ଟାରେ ସମୁଦ୍ରର ଅପର ଦିଗରେ ପ୍ରଥମେ ନୂତନ ଦେଶର ବିସ୍ମୟକର ଆବିଷ୍କାର ହୋଇଥିଲା ।

କଲମ୍ବସ ନିଜକୁ ସତ୍ୟର ପ୍ରଚାରକ ବୋଲି ମନେ କରୁଥିଲେ । ଯୀଶୁଙ୍କ ମହିମା ପ୍ରଚାର କରିବା ପାଇଁ ତାଙ୍କର ଆବିର୍ଭାବ ହୋଇଛି ବୋଲି ସେ ମନେ ମନେ ଭାବୁଥିଲେ ।

ସମୁଦ୍ର ଯାତ୍ରା ପୂର୍ବରୁ ଯେତେବେଳେ ତାଙ୍କର ସଙ୍ଗୀମାନେ ମଦ୍ୟ ପାନରେ ମାତୁଥିଲେ, ସେତେ ବେଳେ କଲମ୍ବସ ଆତ୍ମ ସମାହିତ

ହୋଇ ଗୀର୍ଜାରେ ଭଗବାନଙ୍କୁ କରୁଣ ସ୍ୱରରେ ପ୍ରାର୍ଥନା କରୁଥିଲେ । ଭଗବାନଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ନିଜର ମହତ ପ୍ରଚେଷ୍ଟାର ସଫଳତା ଉପରେ ତାଙ୍କର ଯଥେଷ୍ଟ ଆସ୍ଥା ଥିଲା । ତାହାଙ୍କ ଠାରେ ନେତାର ଉପଯୁକ୍ତ ଶକ୍ତି ଓ ସାହସ ନିହିତ ଥିଲା । ସେହି ଅମାନୁଷିକ ଶକ୍ତି ସେ ଉତ୍ତରାଧିକାର ସୂତ୍ରରେ ଲାଭ କରିଥିଲେ ।

ଏକଦା କଲମ୍ବସଙ୍କର ଜାହାଜ ଯାଇ ଅଗ୍ନିନକ ଓସ୍ୱେଷ୍ଟ ଇଣ୍ଡିଜର ଘାଟରେ ଲାଗିଲା । ସେଠାରେ ପହଞ୍ଚି କଲମ୍ବସ ଜାଣି ପାରିଲେ ଯେ ତାହାଙ୍କ ଆଗରୁ ଆଉ କେହି ସେହି ଜାଗାରେ ଉପସ୍ଥିତ ହୋଇ ସାରିଛି । ଏହା ଜାଣି ପାରି କଲମ୍ବସ ଅବାକ ଓ ହତାଶ ହେଲେ । ଅଗତ୍ୟା ସେ ନିଜ ଦଳର ଦଳପତି ପଦ ପାଇ ସନ୍ତୋଷ ଓ ସୁଖରେ ଦିନ ଯାପନ କରିବାକୁ ଲାଗିଲେ ।

୫

ବଡ଼ ଅଜବ କଥା ଯେ କଲମ୍ବସଙ୍କର ଉତ୍ତର କାଳର ଦୁଇ ଜଣ ଦୁଃସାହସୀ ନେତା କର୍ଟେଜ ଓ ପିଜାରୋ ସେହି ସ୍ଥାନରେ ୟୁରୋପୀୟ ସଭ୍ୟତାର ବିବର୍ତ୍ତନ ନିମନ୍ତେ ଯଶ ଓ ଗୌରବର ଅଧିକାରୀ ହେଲେ ।

ସେହି ନେତା ଦୁହିଁଙ୍କୁ ଅବଶ୍ୟ ପ୍ରସ୍ତର ଯୁଗର ଶେଷ ଉପଜାତି-ମାନଙ୍କ ବିରୁଦ୍ଧରେ ସାମନା ସାମନି ଛିଡ଼ା ହେବାକୁ ପଡ଼ିଥିଲା । ସେମାନେ ବହୁ ବିପଦର ସମ୍ମୁଖୀନ ହୋଇଥିଲେ । ସେତେବେଳେ ଆମେରିକାରେ ଅସଭ୍ୟ ଉପଜାତିମାନେ ଦଳ ଦଳ ହୋଇ ସ୍ୱଚ୍ଛନ୍ଦରେ ଘୂରି ବୁଲୁଥିଲେ । ସେମାନଙ୍କ ଦୌରାତ୍ମ୍ୟରେ ସେଠାରେ ୟୁରୋପୀୟ ସଭ୍ୟତାର ବିକାଶ ହୋଇ ପାରିଲା ନାହିଁ ।

କର୍ଟେଜ ମେକ୍ସିକୋକୁ ପଳାଇ ଯାଇ ଦେଖିବାକୁ ପାଇଲା ଯେ ସେଠାରେ ଲୋକମାନେ ଆଗ୍ନେୟଗିରିକୁ ପୂଜା କରୁଛନ୍ତି । ନରବଳି ସେହି ପୂଜାର ପ୍ରଧାନ ଉପଚାର ଥିଲା ।

ନୂତନ ପୃଥିବୀରେ କଲମ୍ବସ ଯେଉଁଠାକୁ ଯାଉଥିଲେ, ସେଠାରେ ସେ ଆଲୁଅ ଓ ନିଆଁର ବ୍ୟବହାର ଦେଖି ପାରୁଥିଲେ— ସବୁଠି ଅଗ୍ନିର ପୂଜା ।

ତେଣେ ଶ୍ୱେତକାୟମାନଙ୍କୁ ଦେଖି ଲୋହିତ ଭାରତୀୟମାନେ ପ୍ରଥମେ ଭାବିଲେ, ବୋଧ ହୁଏ ସେମାନଙ୍କର ଆରାଧ୍ୟ ଦେବତା ସୂର୍ଯ୍ୟଦେବ ଧରଣୀରେ ଅବତୀର୍ଣ୍ଣ ହୋଇଛନ୍ତି ।

କିନ୍ତୁ ଲୋହିତ ଭାରତୀୟମାନଙ୍କର ଏହି ଧାରଣା କାଟିବାକୁ ଅବଶ୍ୟ ବେଶୀ ସମୟ ଲାଗିଲା ନାହିଁ । ଫଳରେ, ପ୍ରଥମେ ଯେଉଁ-ମାନେ ୟୁରୋପରୁ ସଭ୍ୟତାର ନିଶାଣ ଧରି ସେଠାକୁ ଆଗଭର ହୋଇ ଯାଇଥିଲେ, ସେମାନଙ୍କ ଭିତରୁ ଅଧିକାଂଶ ମେକ୍ସିକୋ-ବାସୀଙ୍କର ଆରାଧ୍ୟ ଦେବତାଙ୍କର ବେଦୀ ତଳେ ବଳି ପଡ଼ିଲେ । କେବଳ ମେକ୍ସିକୋରେ ନୁହେଁ, ସେତେବେଳେ ଦକ୍ଷିଣ ୟୁରୋପର ଅବସ୍ଥା ମଧ୍ୟ ତଦ୍ରୂପ ଥିଲା ।

ମେକ୍ସିକୋରେ ନୂତନ ଜଗତ ସହିତ ପ୍ରଥମ ସଂଘାତ ଆରମ୍ଭ ହୋଇଥିଲା । ସେଠାରେ ଆଦିମ ଅସଭ୍ୟ ଓ ସଭ୍ୟ ସମାଜ ଭିତରେ ପ୍ରଚଣ୍ଡ ଲଢ଼େଇ ଲାଗିଥିଲା । ଫଳରେ, ୟୁରୋପୀୟ ସଭ୍ୟତାର ଅଗ୍ରଗତି ବାଧା ପାଇଲା ଏବଂ ଆଉ ଆଗେଇ ପାରିଲା ନାହିଁ ।

କିନ୍ତୁ ସଭ୍ୟତାର ସ୍ରୋତ ଲୋହିତ ଭାରତୀୟ ବାଧାକୁ ଉତ୍ତର ଦିଗକୁ ଭସାଇ ନେଇଗଲା । ତେଣେ ଓଯେଷ୍ଟ ଇଣ୍ଡିଜରେ ବ୍ୟାପକ ମହାମାରୀ ଫଳରେ ସେଠାକାର ଅଧିବାସୀମାନେ ଦଳ ଦଳ ହୋଇ

ଯୋକ ମାଟ୍ଟି ପର ଗୁରୁ ଆଡ଼େ ଫଡ଼ ମଲେ । ନୂତନ ସଭ୍ୟତା ସେଠାକାର ସବୁ ମଳୀନତାକୁ ଧୋଇ ଦେଲା ।

ସେତେ ବେଳେ ସୁଦ୍ଧା ମେକ୍ସିକୋରେ ଲଢ଼େଇ ସରି ନ ଥିଲା । ଇଗଲ ପକ୍ଷୀ ସାପ ଉପରେ ଚଢ଼ାଉ କଲା ଭଳି କର୍ଟେଜର ନେତୃତ୍ୱରେ ୟୁରୋପୀୟ ସୈନ୍ୟମାନେ ସେଠାରେ ଆକ୍ରମଣ ଆରମ୍ଭ କଲେ । ଅସଭ୍ୟ ହିଂସ୍ର ବିଷଧର ସାପର ତେଜ କମ ନ ଥିଲା । ସେମାନେ ପରାଜୟ ସ୍ୱୀକାର କରିବାକୁ ଚାହିଁଲେ ନାହିଁ ।

କିନ୍ତୁ ଏହି ସମୟରେ ସେମାନଙ୍କୁ ଜଣେ ସ୍ତ୍ରୀ ଲୋକର ସାଂଘାତିକ ବିଶ୍ୱାସଘାତକତା ଯୋଗୁଁ ଶେଷରେ ପରାଜୟ ସ୍ୱୀକାର କରିବାକୁ ହେଲା ।

ଇତି ମଧ୍ୟରେ ବହୁ ବର୍ଷ ବିତିଗଲା !

ଆସିଲେ ଜଣେ ନବ ଯୁବକ । ପ୍ରାଣୀ ବିଜ୍ଞାନୀ ଡାରଉଇନ । ମଣିଷର ଅଜ୍ଞାତ ଯାତ୍ରା ପଥରୁ ବର୍ତ୍ତମାନକୁ ଏବଂ ବର୍ତ୍ତମାନରୁ ଭବିଷ୍ୟତ ଅଗ୍ରଗତିର ଇଙ୍ଗିତ ଦେଇ ସେ ଆସି ପହଞ୍ଚିଲେ ।

ତାଙ୍କର ସମକାଳୀନ ଲୋକମାନେ ଦେଖି ପାରିଲେ, ସତେ ଯେମିତି ଜଣେ ଅଭିଶପ୍ତ ନାବିକ ସମୁଦ୍ରର ବକ୍ଷ ଭେଦ କରି ଅନନ୍ତ ଯାତ୍ରାର ପଥରେ ଅଗ୍ରସର ହେଉଛି । ସେମାନେ ଆହୁରି ଭାବିଲେ, ହୁଏତ ତାହାକୁ ଚିର ଦିନ ଏମିତି ଭାବରେ ମଣିଷର ଅନନ୍ତ ଯାତ୍ରାର ଦୂତ ହୋଇ ଚାଲିବାକୁ ପଡ଼ିବ, କିମ୍ବା ସେ ମଣିଷର ପରିସମାପ୍ତି ପଥର ଇଙ୍ଗିତ ଜଣାଇ ଦେଇ ଯାଉଛି ।

# ଲେଖକ ପରିଚୟ

## ଓସାମୁ ଦାଜାଇ :

ପ୍ରଭିଭାଶାଳୀଜାପାନୀ ସାହିତ୍ୟିକ ଓସାମୁ ଦାଜାଇ (୧୯୦୯-୧୯୪୮), ସମ୍ଭ୍ରାନ୍ତ ଜମିଦାର ବଂଶର ମେଧାବୀ ସନ୍ତାନ, ଟୋକିଓ ବିଶ୍ୱ-ବିଦ୍ୟାଳୟରେ ପ୍ରାୟ ପାଞ୍ଚ ବର୍ଷ କାଳ ଫରାସୀ ସାହିତ୍ୟ ବିଭାଗରେ କେବଳ ନାମ ଲେଖାଇ ରଖି ଏଣେ ସାହିତ୍ୟ ଚର୍ଚ୍ଚା ଓ ବାମପନ୍ଥୀ ଆନ୍ଦୋଳନରେ ମାତି ଶେଷକୁ ୧୯୩୫ରେ ସେଠାରୁ ବିଦାୟ ନେଲେ । ଇତି ମଧ୍ୟରେ ତାଙ୍କର ଶ୍ରେଷ୍ଠ ଗଳ୍ପସବୁ ଅତିଶୟ ଜନପ୍ରିୟ ହୋଇ-ଥିଲା । ସେଗୁଡ଼ିକରେ ତାଙ୍କର ଉଦ୍‌ଭାବନୀ ଶକ୍ତି ଓ ବୁଦ୍ଧିମତ୍ତାର ପରିଚୟ ମିଳିଥିଲେ ସୁଦ୍ଧା ତାଙ୍କର ପ୍ରତିଭାର ସମ୍ପୂର୍ଣ୍ଣ ବିକାଶ ହେଲା ଦ୍ୱିତୀୟ ମହାଯୁଦ୍ଧ ପରେ । ୧୯୪୭ରେ ତାଙ୍କର ଅର୍ଦ୍ଧଶିକ୍ଷିତ ଉପନ୍ୟାସ "ସୂର୍ଯ୍ୟାସ୍ତ" ପ୍ରକାଶିତ ହେଲା ସଙ୍ଗେ ସଙ୍ଗେ ସାହିତ୍ୟ ରସିକ ସମାଜରେ ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି ହେଲା । ଅତି ଅଳ୍ପ ସମୟ ଭିତରେ ସେ ପ୍ରଭୂତ ସାହିତ୍ୟିକ ଖ୍ୟାତି ଅର୍ଜନ କରିଥିଲେ, ମାତ୍ର ସାଂସାରିକ ସୁଖରେ ଅଂଶ ଗ୍ରହଣ କରି ପାରିଲେ ନାହିଁ । ସେ ଜାପାନରେ ରାଁବୋ ନାମରେ ଖ୍ୟାତ ହୋଇଥିଲେ । ଏହି ଜଗତରୁ ବିଦାୟ ନେବା ପାଇଁ ଏକାଧିକ ବାର ଚେଷ୍ଟା କରି ସେ ସଫଳ ହୋଇ ପାରି ନ ଥିଲେ । ଅବଶେଷରେ ୧୯୪୮ର ଜୁନ ୧୯ ତାରିଖରେ ତାମାଗାଓୟା ଜଳାଧାରରେ ସେ ନିଜର ରୋଗଜୀର୍ଣ୍ଣ ଶରୀରକୁ ବିସର୍ଜନ ଦେଇଥିଲେ । ତାଙ୍କର ଅନ୍ୟାନ୍ୟ ପ୍ରଧାନ ଗ୍ରନ୍ଥ—"ଭିଲନ୍‌ସ ଓୟାଇଫ୍" "ଅଧୋଗାମୀ ବର୍ଷଗୁଡିକ", "ବାତିଲ", "ଗୁଡ଼ବାଇ", ଇତ୍ୟାଦି ।

**ସଂକ୍ଷିପ୍ତ ଉପନ୍ୟାସ : "ଦି ସେଟିଂ ସାନ"**

## ସୁନ୍ଦରୀ ଆସାନଦାସ ଉତ୍ତମଚନ୍ଦାନୀ :

ସିନ୍ଧୀ ଭାଷାର ବିଶିଷ୍ଟ ଲେଖିକା ସୁନ୍ଦରୀ ଆସାନ ଦାସ ଉତ୍ତମ ଚନ୍ଦାନୀ (୧୯୨୪) ସିନ୍ଧୁପ୍ରଦେଶର ହାଇଦ୍ରାବାଦ ଠାରେ ଜନ୍ମଗ୍ରହଣ କରି ବିଶ୍ୱବିଦ୍ୟାଳୟରୁ କଳାରେ ଉପାଧି ଲାଭ କରିଥିଲେ । ଭାରତ ବିଭାଜନ ପରେ ସେ ନିଜର ପରିବାର ସହ ପାକିସ୍ଥାନରୁ ଚାଲି ଆସି ବମ୍ବେରେ ବସବାସ କଲେ । ତାଙ୍କର ପ୍ରଥମ ଉପନ୍ୟାସ "କିରିଚେର ଦେବରୁଣ" ୧୯୫୩ରେ, କାହାଣୀ ସଂକଳନ "କୋଶା" ୧୯୫୪ରେ ଏବଂ ଅନ୍ୟତମ ପ୍ରସିଦ୍ଧ ଉପନ୍ୟାସ "ପ୍ରୀତ ପୁରାନ ରୀତ ନିରାଲି" ୧୯୫୬ରେ ପ୍ରକାଶିତ ହେଲା । କବିତା ସଂଗ୍ରହ "ଶାନ୍ତିର ଆହ୍ୱାନ"ର ସିନ୍ଧୀ ଅନୁବାଦ (ଅମନ ସାଦେ ପିପ୍ୟୋ) ନିମନ୍ତେ ୧୯୭୬ରେ ତାହାଙ୍କୁ ସୋଭିୟତ ଦେଶ ନେହେରୁ ପୁରସ୍କାର ପ୍ରଦାନ କରା ଯାଇଥିଲା ।

ସଂକ୍ଷିପ୍ତ ଉପନ୍ୟାସ : "ନାୟିକାର ନାମ ରେଖା"

## କୋହାନେସ ଭିଲହେମ ଜେନସେନ :

ଡେନମାର୍କର ପ୍ରଖ୍ୟାତ ସାହିତ୍ୟିକ ଜୋହାନେସ ଭିଲହେମ ଜେନସେନ (୧୮୭୩–୧୯୫୦) ଯଥା ସମୟରେ ବିଦ୍ୟାଳୟର ପାଠ ଶେଷ କରି କୋପେନହେଗେନ ବିଶ୍ୱବିଦ୍ୟାଳୟରେ ଚିକିତ୍ସା ଶାସ୍ତ୍ର ବିଭାଗରେ ଭର୍ତ୍ତି ହେଲେ । କିନ୍ତୁ କିଛି ଦିନ ପରେ ଅଧ୍ୟୟନ ପରିତ୍ୟାଗ କରି ସେ ସାହିତ୍ୟରେ ମନୋନିବେଶ କଲେ । ଡେନମାର୍କର ସାହିତ୍ୟ

ଭଣ୍ଡାର ତାଙ୍କର ଷାଠିଏ ଖଣ୍ଡ ପୁସ୍ତକରେ ସମୃଦ୍ଧ । ସେ କାବ୍ୟ, ନାଟକ, କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସରେ ସିଦ୍ଧହସ୍ତ ଥିଲେ । ତାଙ୍କର ଶ୍ରେଷ୍ଠ ଉପନ୍ୟାସ "ଦୀର୍ଘ ଯାତ୍ରା" ଛଅ ଖଣ୍ଡରେ ଦୀର୍ଘ ତେର ବର୍ଷ ଭିତରେ କ୍ରମେ କ୍ରମେ ପ୍ରକାଶିତ ହୋଇଥିଲା (୧୯୦୯-୨୨) । ପରେ ଏହା ଇଂରେଜୀରେ ତିନି ଖଣ୍ଡରେ ଅନୂଦିତ ହେଲା । ଏହି ମହାକାବ୍ୟ ଧର୍ମୀ ଉପନ୍ୟାସ ଖାଲି ଡେନମାର୍କରେ ନୁହେଁ; ବିଶ୍ୱ ସାହିତ୍ୟରେ ଏକ ଅମୂଲ୍ୟ ସମ୍ପଦ । ପ୍ରଧାନତଃ ଏଥି ପାଇଁ ତାହାଙ୍କୁ ୧୯୪୪ରେ ନୋବେଲ ପୁରସ୍କାରରେ ସମ୍ମାନିତ କରା ହୋଇଥିଲା । ସାହିତ୍ୟ ସାଧନା ସାଙ୍ଗରେ ସେ ଦେଶ ବିଦେଶ ଭ୍ରମଣ କରିବାକୁ ଖୁବ୍ ସୁଖ ପାଉଥିଲେ ।

### ସଂକ୍ଷିପ୍ତ ଉପନ୍ୟାସ : "ଦି ଲଙ୍ଗ ଜର୍ନି"